ପ୍ରକାଶକ:

**ନବଜୀବନ ପୁସ୍ତକାଳୟ**

ବୃନ୍ଦମାଚୌକ, କଟକ-୨

First Published 1931 (Anandalahari Upanyasamala)

ନୂତନ ସଂସ୍କରଣ

୧୯୮୩

ମୁଦ୍ରଣ:

**ନବଜୀବନ ପ୍ରେସ**

ବୃନ୍ଦମାଚୌକ, କଟକ-୨

ମୂଲ୍ୟ :

ଟ୧୧.୦୦

# ଜଗୁଆ ମା

## ଏକ

ଗୋପାଳ ବି. ଏ. ପାସ୍ କରି ବସିଛନ୍ତି । ବି. ଏ. ଘାଟିଟା ପାରି ହୋଇଗଲେ ଆମ ଯୁବକମାନଙ୍କ ଆଖି ଆଗରେ ସୁଖର ଗୋଟାଏ ଚଳଚ୍ଚିତ୍ର ମେଲି ହୋଇଯାଏ । ବି. ଏ. ପରୀକ୍ଷା ପୂର୍ବରୁ ମନେ ମନେ ନିଜକୁ ବଡ଼ କ୍ଷୁଦ୍ର ବିଚାରୁଥାନ୍ତି ; ମାତ୍ର କୃତିତ୍ୱସହ ସେ ଖଣ୍ଡ ପାସ୍ ହୋଇଯିବା ପରେ ମନେ ମନେ ନିଜର ମୂଲ୍ୟଟା ବେଶ୍ ବଢ଼ିଯାଏ । ଯେଉଁମାନେ ଆମକୁ ଶାସନ କରୁଛନ୍ତି, ଯେଉଁମାନେ ଆମ ଆଗରେ ଦୃପ୍ତ ଅଧିକାର ଜାରି କରି ବସିଛନ୍ତି, ସେମାନଙ୍କ ମଧ୍ୟରୁ ଆମେ ଜଣେ, ଏହି ଭାବ ଆସିଯାଏ । ଏହି 'ସୋଽହଂ' ତତ୍ତ୍ୱ ଜ୍ଞାନଟା ମିଳିବା ସାଙ୍ଗେ ସାଙ୍ଗେ ଆମ ଯୁବକମାନେ ଜୀବନର ବାସ୍ତବତାରେ ଆସି ଧକ୍କା ଖାଇଲା ପର୍ଯ୍ୟନ୍ତ କଳ୍ପନାରେ ସ୍ୱର୍ଗ ଗଢ଼ୁଥାନ୍ତି ।

ଗୋପାଳ କୃତିତ୍ୱ ସହ ବି. ଏ. ପାସ୍ କରିଛନ୍ତି ସତ, କଳ୍ପନାରେ ସ୍ୱର୍ଗ ଗଢ଼ିଛନ୍ତି ସତ—ତେବେ ତାଙ୍କ ସ୍ୱର୍ଗଟା କଲେଜରୁ ସଦ୍ୟ ବାହାରିଥିବା ସାଧାରଣ ବି. ଏ. ଉପାଧିଧାରୀ ଯୁବକର ମାମୁଲି ସ୍ୱର୍ଗ ନୁହେଁ । ସେଇଟା ଟିକିଏ ଭିନ୍ନ ଧରଣର । ତାଙ୍କ ସ୍ୱର୍ଗରେ ନାଲି ପଗଡ଼ି ଲଗେଇ ହୁଦା ପକେଇ ଚପରାସି ଅମୃତ ଗ୍ଲାସ ହାତକୁ ବଢ଼େଇବାର ବ୍ୟବସ୍ଥା ନ ଥାଏ । ତାଙ୍କ ପାରିଜାତ କାନନର କୁଣ୍ଡରେ ବିଳାତି ବାକ୍ସଗଛ ଲାଗିନଥାଏ କିମ୍ବା ତାଙ୍କ 'ଅପ୍ସରୀସଙ୍ଗୀତ' ହାର୍ମୋନିୟମ୍ ପିଆନୋ ତାନରେ ହଉନଥାଏ । ଏଗୁଡ଼ାକ ତାଙ୍କୁ ଜଣାପଡ଼ୁଥାଏ, ନିହାତି ମାମୁଲି ଏବଂ ତେଣୁ ନିହାତି ବାଜେମାର୍କା ।

ଗୋପାଳଙ୍କ ମନ ଗୋଟାଏ ନୂଆ ଧରଣର ଅଦ୍ଭୁତ, ଅଦୃଷ୍ଟପୂର୍ବ, ଅଶ୍ରୁତପୂର୍ବ ଭବିଷ୍ୟତ୍ ଗଢ଼ିବାରେ ସବୁବେଳେ ବ୍ୟସ୍ତ ଥାଏ । ଦିନେ ଯେଉଁଟା ସ୍ଥିର କରୁଥାନ୍ତି, ଆର ଦିନକୁ ସେଇଟା ଭାରି ନୀରସ ଜଣାଯାଉଥାଏ । ତଥାପି ପୁଣି କଳ୍ପନା ଚାଲେ ।

ଦିନେ ଏପରି ନୀରସୀଭୂତ ବାସି ସ୍ୱର୍ଗକୁ ଛାଡ଼ି ଗୋଟାଏ ସଦ୍ୟସ୍ୱର ଗଢ଼ା ଚାଲିଛି, ଜଣେ ବିଶିଷ୍ଟ ବନ୍ଧୁ ଆସି ପଚାରିଲେ, "କହୋ, ଗୋପାଳ ! ଆଜିକାଲି ପୁଣି କଣ କରୁଛ ?"

ଆଗନ୍ତୁକ ବନ୍ଧୁ କନ୍ତୁ 'ମାନନୀୟ' । ଗୋପାଳ ତରବର ହୋଇ ଉଠି ଅଭିବାଦନ କରି ଉତ୍ତର ଦେଲେ, "ଆଜ୍ଞା, ଆଉ କଣ କରିବି ? କିଛି ତ କାମ ନାହିଁ ।"

"ଆଚ୍ଛା, ଗୋଟାଏ ଟିଉସନ୍ କରିବ ?"

ଟିଉସନ୍ ନାମଟା ଶୁଣି ଗୋପାଳ ଭିତରେ ଭିତରେ ଭାରି ଚଟିଗଲେ । ଟିଉସନ୍ ! ବର୍ତ୍ତମାନ ଠିକ୍ ସେ ଯାହା ବିଚାରୁଥିଲେ ତା' ପରିବର୍ତ୍ତରେ ଟିଉସନ୍ । କଲେଜରେ ପଢ଼ୁଥିବା ଟିଉସନ୍‌ବାଲା ସାଙ୍ଗମାନଙ୍କୁ ଦେଖି ଧୂଳିଆ ଗୋଡ଼, ମଇଳା ଲୁଗା, ସହର ଭିତର ମେସ୍‌ରୁ କଲେଜକୁ ଚାଲି ଆସିବା ହେତୁ ମୁହଁରେ କ୍ଲାନ୍ତଭାବ, ପଛ ବେଞ୍ଚରେ ସଁ ସଁ ହୋଇ ଆସି କ୍ଲାସ ଆରମ୍ଭର ପାଞ୍ଚମିନଟ୍ ପରେ ବସିବା ଏବଂ ସାଧାରଣ ପିଲାଙ୍କ ମଜଲିସ୍‌ରେ ନ ମିଶି ସବୁବେଳେ ଚିନ୍ତାଭାରରେ ଅବନତ ହୋଇଯିବା—ଏସବୁ ସଙ୍ଗେ ଗୋପାଳ ଟିଉଟରମାନଙ୍କର ସ୍ୱାଭାବିକ ସମ୍ବନ୍ଧ ଠଉରେଇଥିଲେ । ଭଲ କରି ପଦେ ଅଧେ ବତେଇଦେବାପାଇଁ ମନ ହେଲା । ତେବେ ସବୁ ସ୍ଥାନରେ ତ ସମାନ ବତେଇ ହବ ନାହିଁ । ମୃଦୁ ଅବଜ୍ଞାରେ ଟିକିଏ ହସି ଉତ୍ତର ଦେଲେ—"ଆଜ୍ଞା, ନା, ଟିଉସନ୍ କରିବାର ତ ଦରକାର ନାହିଁ ।"

ବନ୍ଧୁ ଉତ୍ତର ଦେଲେ, "ତମେ କଣ ବଗୁରିତ ପରି, ଖାଲି ମେସ୍‌ଖର୍ଚ୍ଚ ଯୋଗାଇବା ପାଇଁ ଟିଉସନ୍ ଦରକାର ? ମୁଁ ଯେଉଁ ଟିଉସନ୍ କଥା କହୁଛି, ସେଇଟା ଗୋଟାଏ ଭଲ ଜାଗାରେ । ତମେ ପଢ଼େଇଲେ ଭଲ ହୁଅନ୍ତା । ସମସ୍ତଙ୍କୁ ସେପରି ଜାଗାରେ ଛାଡ଼ିଦେଇ ନିଶ୍ଚିନ୍ତ ରହି ହବ ନାହିଁ ।"

"ଆଚ୍ଛା, ମୁଁ ତ କେବେ ଟିଉସନ୍ କରିନାହିଁ ?"

"ତେବେ ତ ତମର ସେ କାର୍ଯ୍ୟଟା ଉପରେ ଦେଖିନେବା ଦରକାର । ଟିଉସନ୍ କଲେ ଜାଣିପାରିବ, ତମେ ଆଜି ପର୍ଯ୍ୟନ୍ତ ଯାହା ପଢ଼ିଛ, ସେ ସବୁ ଭଲ ହୋଇ ଜୀର୍ଣ୍ଣ ହୋଇଛି କି ନାହିଁ । ଓପର କ୍ଲାସ ବହି ପଢ଼ାଇବାକୁ ହେବ ; ଯାହାକୁ ପଢ଼େଇବ ତା'ର ଯେତିକି ଲାଭ, ତମର ମଧ୍ୟ ସେତିକି ! ଚର୍ଚ୍ଚା ଯୋଗୁଁ ତମ ନିଜ ଜ୍ଞାନ ମାର୍ଜିତ ହୋଇଯିବ ।"

ଗୋପାଳ ଏପରି ବଳାବଳ ଫଳରେ ନାହିଁ କରିପାରିଲେ ନାହିଁ । ଆଗ୍ରହ, ହଉ ଚେଷ୍ଟାକରି ଦେଖିବ ବୋଲି କହି ବନ୍ଧୁଙ୍କୁ ବିଦାୟ ଦେଲେ ।

ଛେଳି ପାଣିକ ଓଟରି ହେଲା ପରେ ଗୋପାଳ ପ୍ରଥମ ଦିନ ଟିଉସନ୍ କରିବାକୁ ବାହାରିଲେ । ବାଟରେ ଗଲାବେଳେ କେତେ ପ୍ରକାର ଅସୁବିଧା, ବିରକ୍ତିର କଳ୍ପନା କରୁଥାନ୍ତି । ଥରେ କିଛି ଗୋଟାଏ ବୁଝାଇଦେବା ପରେ ବୁଝି ନ ପାରିଲେ ଯେପରି ମୁହଁ କରିବାକୁ ହୁଏ, ତାର ଦୁଇ ଗୁରିଥର ଅଭିନୟ ବାଟରେ ହୋଇଗଲା । ମାଇକିନିଆ ଝିଅକୁ ପଢ଼ାଇବାର କଥା । ଯେତେ ଭୁଲ୍ କଲେ ମଧ୍ୟ, ଯେତେ ବୁଝି ନ ପାରିଲେ ମଧ୍ୟ ବେତଦ୍ୱାରା ଶାସ୍ତି ଦେବା ତ ଦୂରର କଥା, ନାଲି ଆଖି ଟିକିଏ ଦେଖାଇବା ସୁଦ୍ଧା ଭଦ୍ରତାବିରୁଦ୍ଧ ହୋଇଯିବ । ଶିକ୍ଷକ ଆସନରେ ବସାଇ ଶାସ୍ତି ଦେବା

ଅଧିକାର କାଢ଼ି ନେବା, ସଂହାରର ପଞ୍ଚାନନ୍ଦ କାଢ଼ିନେବାପରି । ଗୋପାଳ ମନେ ମନେ ବଡ଼ ବ୍ୟସ୍ତ ହେଲେ । ଭାବିଲେ, ସମ୍ମତ ହେବାଟା ଭଲ ହେଲା ନାହିଁ ପରା ! ତେବେ ପୂର୍ଣ୍ଣ ସମ୍ମତି ତ ଦେଇ ନାହାନ୍ତି । ହଁ' ଗୃହ ଜୀବନ ଦେଖି ଭଲ ନ ଲାଗିଲେ ଛାଡ଼ିଦେବାର ଅଧିକାର ରଖିବା ବେଶ୍ ବିଚକ୍ଷଣତାର କାର୍ଯ୍ୟ ହୋଇଛି ।

ପ୍ରଥମଦିନ ଜଣାପଡ଼ିଗଲା, ସ୍ତ୍ରୀଟି ଖୁବ୍ ବୁଦ୍ଧିଆ । ବିରକ୍ତ ହେବାକୁ ପଡ଼ିବ ନାହିଁ, ଶାସ୍ତି ଦେବା ଦରକାର ପଡ଼ିବ ନାହିଁ ; ତେଣୁ ଶାସ୍ତିଦେବା ଅଧିକାରଟା ନ ଥିବାରୁ କୌଣସି ବିଶେଷ ଅସୁବିଧା ହେବ ନାହିଁ । ଥରେ ଗୋଟାଏ କିଛି ବତେଇଦେଲେ ସେ ଚଟ କରି କଥାଟା ଧରିନିଏ ଏବଂ ନିଜର କରି ନେଇ ସେ ବିଷୟରେ ଏପରି ପ୍ରଶ୍ନ କରେ ଯେ ଗୋପାଳଙ୍କ ଭଳି ବିଚକ୍ଷଣ ଟିଉଟର ନ ହୋଇଥିଲେ ଉତ୍ତର ଦେବା କଷ୍ଟକର ହୁଅନ୍ତା ।

ଗୋପାଳଙ୍କୁ ବେଶୀ ଖଟିବାକୁ ପଡ଼ିଲା ନାହିଁ କି ବେଶିଗୁଡ଼ାଏ ବକର୍ ବକର୍ ହେବାକୁ ହେଲା ନାହିଁ । ସ୍ତ୍ରୀ କାର୍ଯ୍ୟରେ ଲାଗିଥାଏ ଏବଂ ତା'ର ସନ୍ଦେହ ପଡ଼ିଲେ ମୋଚନ କରିବା ନିମନ୍ତେ ଗୋପାଳ ଅପେକ୍ଷା କରି ବସିଥାନ୍ତି ।

ଏହି ଅପେକ୍ଷା କରି ବସିବାଟା ହେଲା କାଳ । ଗୋପାଳ ନିଜର ସ୍ତ୍ରୀକୁ ଚନ୍ଦ୍ରଚନ୍ଦ୍ର କରି ଦେଖିବାକୁ ଆରମ୍ଭ କଲେ । "ସୁନ୍ଦର ଲମ୍ବ ଚିକୁର" ରେ ଗୋପାଳଙ୍କ ମନ ବାନ୍ଧିହୋଇଯାଇଥାଏ । ଗୋପାଳଙ୍କ କବିତାପଢ଼ା ମନକୁ ସ୍ତ୍ରୀର 'ମଧୁହାସ' ମାଧବ-ସୁମନକୁ ଜିଣିଥିଲାପରି ଦିଶୁଥାଏ । ତେବେ ଏ ସବୁ ସ୍ତ୍ରୀର ରୂପ-ଲାବଣ୍ୟକୁ ଯେତେ ବଢ଼ାଉଥାଏ, ତହିଁରୁ ବେଶୀ ବଢ଼ାଉଥାଏ ତା'ର ଆଖି ଦିଓଟି । ଗୋପାଳ ସେଥିରେ ଯେଉଁ ଦୀପ୍ତି ଦେଖିଲେ, ତହିଁରେ ତାଙ୍କ ହୃଦୟରେ ଗୋଟାଏ ଅପୂର୍ବ ଭାବ ଖେଳିଗଲା । ସେହି ଆଖି

ଦୁଇଟି—ସେହି ଆଖିପତାର ଚଳନ ଦେଖି ଗୁରୁଜୀର ହୃଦୟର ଗୁଣଗୁଡ଼ିକ ଗୋପାଳଙ୍କ ଆଗରେ କିପରି ଜଣାପଡ଼ିଗଲା, ତାହା ଆମେ ଜାଣିପାରିବା ନାହିଁ ।

ସେ ଯାହା ହେଉ, ଅଳ୍ପଦିନ ଟିଉସନ୍ କଲା ପରେ ଗୋପାଳ ତାଙ୍କ ସମୟର ମୂଲ୍ୟ ଭୁଲିଗଲେ । ଅନ୍ୟ କୌଣସି ଆଡ଼େ ଗଲେ ସେ ଥରକୁ ଥର ହାତର ଘଡ଼ିକୁ ଚାହାନ୍ତି । ବେଶି ସମୟ ହୋଇଯିବ ପରି ବୋଲି ଥରକୁ ଥର ଯିବା ପାଇଁ ଉଦ୍ୟତ ହୁଅନ୍ତି । ପ୍ରଥମେ ଏଠାରେ ମଧ୍ୟ ସେହିପରି ହେଉଥିଲା । ଦୁଇଘଣ୍ଟା ପଢ଼ାଇବାର କଥା । ଘଣ୍ଟାଏ ଅଣଷଠି ମିନିଟ ହେଲା ବେଳକୁ ଗୋପାଳଙ୍କ ଚଉକି ଚୀତ୍କାର କରି ଘୁଞ୍ଚି ଯାଉଥିଲା । ମାତ୍ର ପନ୍ଦର ଦିନ ଯାଉ ନ ଯାଉଣୁ ଦୁଇ ଘଣ୍ଟାରୁ ଅଢ଼େଇଘଣ୍ଟା ତିନିଘଣ୍ଟା ହେବାକୁ ଲାଗିଲା । ଯିବା ସମୟ ହେଲା ବେଳକୁ ସେ ଏପରି ମନୋଯୋଗ ଦେଇ କିଛି ଗୋଟାଏ ପଢ଼ାଇବାରେ ଲାଗିଯାନ୍ତି ଯେ ଚାହୁଁ ଚାହୁଁ ଗୁରୁଜୀର ସ୍କୁଲ ସମୟ ହୋଇଯାଏ ।

ଆହୁରି କିଛିଦିନ ଗଲାରୁ ଦିନକେ ଥରକୁ ଦୁଇଥର ଆସିବା ଦରକାର ପଡ଼ିଗଲା । କେଉଁଦିନ ପାଠ ବିଷୟରେ ବିଶେଷ କିଛି ବୁଝାଇଦେବା ପାଇଁ, ଅନ୍ୟ କେଉଁଦିନ ପଢ଼ାଇବା ବେଳେ ଭୁଲି ଯାଇଥିବା ଗୋଟାଏ କିଛି ପଢ଼ା ଦେବା ପାଇଁ, ପଢ଼ାସଂକ୍ରାନ୍ତ କୌଣସି ବାହାନାର ସୁବିଧା ନ ପାଇଲେ ପଢ଼ାଇବା ବେଳେ ଜାଣି ଜାଣି କଲମଟା ବା ଘଡ଼ିଟା ଛାଡ଼ିଯାଇ ସନ୍ଧ୍ୟା ବେଳେ ଆଉଥରେ ଆସି ଦୁର୍ବଳ ସ୍ମରଣ ଶକ୍ତିର ଦୁହାଇ ଦେଇ ସେଇଟା ନେବାପାଇଁ —ଏପରି ନାନା ଉପାୟରେ ଗୁରୁଜୀଟିର ସାନ୍ନିଧ୍ୟ ଲାଭ କରିବାର ଯୋଗାଡ଼ ହେଲା ।

ଆଉ କିଛିଦିନ ଗଲା । ଗୋପାଳଙ୍କ ସ୍ୱଭାବ-ସୁଲଭ କଳ୍ପନା ଶକ୍ତି ନୂତନ ଆଧାର ପାଇ ପୁଣି ତେଜି ଉଠିଲା । କଳ୍ପନା ଛାତ୍ରୀର ଛାତ୍ରୀତ୍ୱକୁ ଦୂରକୁ ଫିଙ୍ଗିଦେଇ ତାକୁ ସହଧର୍ମିଣୀ ରୂପରେ ଗୋପାଳଙ୍କ ପାଖରେ ଆଣି ବସାଇଦେଲା । ଗୋପାଳ ସହଧର୍ମିଣୀ ପାଇ ଭବିଷ୍ୟତର ଗଢ଼ାଭଙ୍ଗାରେ ଲାଗିଗଲେ । ଦିନେ ସପତ୍ନୀକ ଗୋପାଳ କଟକର ଖୁବ୍ ଗୋଟାଏ ବଡ଼ ସହରରେ ନାଗରିକ ଜୀବନ କଟାଇଲେ; ତହିଁ ଆରଦିନ ମେଘ ଅନ୍ଧାରରେ ଗୋଟାଏ ଖୁବ୍ ଭୀଷଣ ଜଙ୍ଗଲର ଏକ ଭୀଷଣ ଗୁମ୍ଫା ଭିତରେ, ପ୍ରିୟତମା ଛାତ୍ରୀଟି ପାଖରେ ଲଗାଲଗି ହୋଇ ବସି ପ୍ରକୃତିର ଭ୍ରୂକୁଟିକୁ ଅବଜ୍ଞା କଲେ । ପୁଣି ପରଦିନ ଆରଣ୍ୟକ କାଣ୍ଡ ସମାପ୍ତ ହେଲା । ଗୋପାଳ ଛାତ୍ରୀଟିକୁ ସାଙ୍ଗରେ ଧରି କେତେବେଳେ ରେଲଗାଡ଼ିରେ କେତେବେଳେ ଜାହାଜରେ, କେତେବେଳେ ଅବା ଉଡ଼ା ଜାହାଜରେ ଦେଶ ଦେଶ ଘୁରି ବୁଲିଲେ ; କଳ୍ପନାରେ ପ୍ରାକୃତିକ, ବାସ୍ତବ, କାଳ୍ପନିକ ଦୃଶ୍ୟସବୁ ଦେଖି ମୁଗ୍ଧ ହେଲେ । ପ୍ରିୟତମା ସାଙ୍ଗେ ସାଙ୍ଗେ ଥିବାରୁ ଦୃଶ୍ୟଗୁଡ଼ିକର ଦର୍ଶନୀୟତା ବଢ଼ିଯାଉଥାଏ । ଆନନ୍ଦ ବହୁଗୁଣିତ ହେଉଥାଏ ।

ଦିନେ କଳ୍ପନା ମଧ୍ୟରେ ମନେ ପଡ଼ିଗଲା, "ଆଚ୍ଛା, ମୁଁ ତ ଏତେ କଥା ଭାବୁଛି, ତା'ର ମୋ ପ୍ରତି କି ଭାବ ?" ସେହି ଦିନଠାରୁ ମାଷ୍ଟର ଗୋପାଳ ହେଲେ ଗୁଇନ୍ଦା ପୁଲିସ । ଛପି ଛପି ଛାତ୍ରୀଟିର ଭାବ ଭଙ୍ଗୀ ଗତିବିଧି ସବୁ ପରୀକ୍ଷା କରିବାକୁ ଲାଗିଲେ । ତାର କାର୍ଯ୍ୟରେ କଥାରେ ପ୍ରେମ ଅଛି କି ନା ? ଯଦି ଅଛି କେତେ ଡିଗ୍ରୀ ଅଛି ? ସେ ଯେତେବେଳେ କିଛି ଗୋଟାଏ ପଢ଼ା ପଚାରୁଛି, ସେତେବେଳେ ତା'ର ଖାଲି ପଢ଼ା ଜାଣିବାର ଇଚ୍ଛା, ନା ତାଙ୍କ ମୁହଁରୁ ଏହି ସୂତ୍ରରେ ଦି' ଟିକିଏ ପଦ କଥା ଶୁଣିବାର ଇଚ୍ଛା ? ସେ ଯେଉଁ ପଢ଼ାସବୁ ଏତେ ଯତ୍ନରେ କରୁଛି, ଯେଉଁ ଲେଖାସବୁ ଏତେ

ଯତ୍ନରେ ପରିଷ୍କାର କରି ଗୋଲ ଗୋଲ ଅକ୍ଷରରେ ଲେଖୁଚି, ତାହା ସବୁ ମାଷ୍ଟରଙ୍କ ପାଇଁ ଲେଖନ୍ତା, ନା ତାଙ୍କ ପାଇଁ, ତାଙ୍କୁ ଖୁସି କରିବାର ବିଶେଷ ଇଚ୍ଛାରେ କରୁଛି ? ଏହିପରି ସବୁ କାର୍ଯ୍ୟକୁ ଗୋପାଳ ପ୍ରେମ-ପରିମାପକ ଯନ୍ତ୍ରରେ ମାପି ସ୍ଥିର କଲେ, ସ୍ତ୍ରୀଟି ମଧ୍ୟ ତାଙ୍କୁ ପ୍ରେମ-ଚକ୍ଷୁରେ ଦେଖିବାର ସୂଚନା ବେଶ୍ ଆଶାଜନକ ।

## ଦୁଇ

ମଦନବାବୁ ଡେପୁଟି ମେଜେଷ୍ଟର ଇଜ୍‌ଲାସ୍‌ରେ ବସିଲେ ଆସାମୀମାନଙ୍କର ହୃତ୍‌କମ୍ପ ହେଉଥିଲା । ତେବେ ଆସାମୀମାନଙ୍କର ତ ସବୁ ଇଜ୍‌ଲାସ୍‌ରେ ହୃତ୍‌କମ୍ପ ହେବାର କଥା । ମେଣ୍ଢାଛୁଆ ବିଗ୍ଭରକ ହେଲେ ସେମାନଙ୍କର ମନର ଭାବ ଅନ୍ୟ ପ୍ରକାର ହୁଅନ୍ତା ନାହିଁ । ଆସାମୀ କଥା ଛାଡ଼ । ମଦନବାବୁ କଚେରି କଲେ ଚପ୍‌ରାସି, ପେସ୍କାର, ଓକିଲଙ୍କର ବୁକୁ ଦାଉଁଦାଉଁ ହୁଏ । ସହାନୁଭୂତିରେ ଟେବୁଲ ଚଉକି ଏବଂ କାଠବାକ୍ସ ସବୁ ମଧ୍ୟ ଥରିଯାନ୍ତି । ମଦନବାବୁ ଥିଲେ ଭାରି କଡ଼ା ହାକିମ ।

କଚେରି କରିସାରି ଘରକୁ ଫେରି ଆସିଲେ, ହାକିମ ମେଜାଜ୍‌ର ଅଳ୍ପ ବହୁତ ପରିଚୟ ଚାକରବାକରଙ୍କ ଉପରେ ଏବଂ ସ୍ତ୍ରୀଙ୍କ ଉପରେ ହେଉଥିଲା । ଚାକରବାକରଗୁଡ଼ାକ ଏକାଠି ହୋଇ କଥାବାର୍ତ୍ତା ହେବାର ଦେଖିଲେ, ତାଙ୍କର ଭାରି ରାଗ ହୁଏ । ଚାକର ଦରମା ଖାଉଛନ୍ତି, ସବୁବେଳେ କାମ କରିବାର କଥା ; କଥାବାର୍ତ୍ତା ହେବେ କାହିଁକି ? ଏଥିପାଇଁ ସେମାନଙ୍କୁ ଯେତେ ନାଲି ଆଖି ଦେଖିବାକୁ ପଡ଼େ ଏବଂ ଅନେକ ସମୟରେ ନାଲି ଆଖିରେ ଚଳନ୍ତି ପ୍ରତିମା ହାତ ସେମାନଙ୍କ ପିଠିରେ ଯେତେ ବିପ୍ଳବ ଘଟାଏ, ସେମାନଙ୍କୁ ରାତି ଛ'ଘଣ୍ଟା ଛଡ଼ା ଅନ୍ୟ ସବୁବେଳେ କାର୍ଯ୍ୟରେ ନ ଲଗାଇବା

ଅପରାଧରେ ପତ୍ନୀଙ୍କୁ ମଧ୍ୟ ସେତିକି ଗାଳି ଶୁଣିବାକୁ ହୁଏ । ଗୋଟିଏ କାଚଗ୍ଲାସ ଭାଙ୍ଗିଗଲେ, ଗୋଟାଏ ଗିନା ମାଙ୍କଡ଼ ନେଇଗଲେ ବା ଗୋଟାଏ ଫୁଲଗଛ ଗାଈ ଖାଇଗଲେ, ମଦନବାବୁ ପଥର ଫଟା ସ୍ୱରରେ ଗୃହର ଭବିଷ୍ୟତ ସର୍ବନାଶର ସୂଚନା ଦେଇ ଦେଇ ପ୍ରାୟ ଏକ ସପ୍ତାହର ସମସ୍ତ ଛୁଟିବେଳ କଟାଇ ଦିଅନ୍ତି । ମଦନବାବୁ ଥିଲେ ଭାରି କଡ଼ା ଲୋକ ।

ପେନ୍‌ସନ ପାଇ ଇଜଲାସ୍ ତ୍ୟାଗ କଲାରୁ ସ୍ତ୍ରୀଙ୍କ ଉପରେ, ଚାକର ବାକରଙ୍କ ଉପରେ କଡ଼ା ମେଜାଜ ଦେଖାଇବାକୁ ବେଶୀ ସମୟ ମିଳିଲା । ପେନସନ୍ ପ୍ରାପ୍ତ ଡେପୁଟିବାବୁ ପାନପାଟିରେ ହୁକା ଟାଣୁ ଟାଣୁ ଧୂଆଁ ସାଙ୍ଗେ ଗାଳି ଉଦ୍‌ଗିରଣ କରି କରି ଘରକୁ ଅନ୍ଧ-କାରରେ ଢାଙ୍କିଦେଲେ ଏବଂ ଗୃହର ସମସ୍ତଙ୍କର ଆନନ୍ଦ ସୁଖ ସ୍ୱାଚ୍ଛନ୍ଦ୍ୟ ଉପରେ କାଳି ବୋଳିଦେଲେ ।

ବହୁଦିନର ଶ୍ୱାସରୋଗ ପତ୍ନୀ ଉର୍ମିଳା ଦେବୀଙ୍କୁ ଯମାଳୟ ଆଡ଼କୁ ବେଶ୍ ଖଣ୍ଡେ ଦୂର ଆଗେଇ ଦେଇଥିଲା । ଅବସର ପ୍ରାପ୍ତ ପତିଙ୍କ ପ୍ରକୋପରେ ସେ ଏକମାତ୍ର କନ୍ୟା କନକଲତାକୁ ପତିଙ୍କ ପାଖରେ ଦେଇ ଉପଯୁକ୍ତ ସମୟର ବହୁ ପୂର୍ବରୁ ଯମାଳୟରେ ଯାଇ ଠେଲାହୋଇ ପଶିଲେ ।

ଏକମାତ୍ର କନକଲତା ମଦନବାବୁଙ୍କ ଦାଉରୁ ଏ ପର୍ଯ୍ୟନ୍ତ ରକ୍ଷା ପାଇଯାଇଥିଲେ । ମଦନବାବୁ ନିଜର ଦୋଷ ପୂରା ଷୋଳଅଣା ଦେଖୁନଥିଲେ ଏବଂ ଝିଅକୁ ବାରଅଣା ପର୍ଯ୍ୟନ୍ତ ଘୁଞ୍ଚାଇଦେଉଥିଲେ । ଅନ୍ୟ ଚାରିଅଣା ପାଇଁ କେଉଁଦିନ ଦାୟୀ ହେଉଥିଲେ ତା'ର ମା, କେଉଁଦିନ ଅବା ଦାୟୀ ହେଉଥିଲେ ଚାକରବାକର । ଉର୍ମିଳାଦେବୀଙ୍କ ଅନ୍ତେ କିଛିଦିନ ଏହି ହିସାବ ଚାଲିଲା । ମାତ୍ର ମଦନବାବୁଙ୍କ

ବିକ୍ଷୋଦ୍‌ଗାର ସହିବାକୁ ଲୋକର ଅଭାବ ହେଲେ ତ ନ ଚଳେ । ସୁତରାଂ ଝିଅଟି କନକକୁ ପିତାଙ୍କ ସ୍ନେହ ଏବଂ କୋପରେ ସମାନ ଭାଗୀଦାର ହେବାକୁ ପଡ଼ିଲା ।

ପିତାଙ୍କ ଆଦରର ଆଂଶିକ ବିରାମ ଅନୁଭୂତ ହେବାରେ, ମାତୃହୀନା ବାଳିକାର ସମସ୍ତ ଖେଳବସର ପଣିଆ ଉଭେଇଗଲା । ବୟସ ବୃଦ୍ଧି ହେବା ସଙ୍ଗେ ସଙ୍ଗେ ସେ ନିଜର ନିଜତ୍ୱ ଭୁଲିବାକୁ ଚେଷ୍ଟାକରି ସବୁବେଳେ ପିତାଙ୍କୁ ସନ୍ତୁଷ୍ଟ କରିବାକୁ ଲାଗିଲା । ନିଜର ସୁଖ ସ୍ୱାଚ୍ଛନ୍ଦ୍ୟ, ଲାଭାଲାଭକୁ ପାସୋରି ସେ ପିତାଙ୍କ ଇଚ୍ଛା ଅନିଚ୍ଛାକୁ ଲକ୍ଷ୍ୟ ରଖି ନିଜର କର୍ତ୍ତବ୍ୟ ଅକର୍ତ୍ତବ୍ୟ ସ୍ଥିର କରିବାକୁ ଲାଗିଲା ।

ଗୋପାଳ ଆସି ଟିଉସନ୍ ମାଷ୍ଟର ହେଲେ, ସେହି ପିତାଙ୍କ ଇଚ୍ଛାରେ । କନକଙ୍କୁ ନିଜେ ନିଜେ ପଢ଼ିବାକୁ ଭାରି ଭଲ ଲାଗେ । କଷ୍ଟ ଅଙ୍କକୁ ନିଜେ ବାରମ୍ବାର କଷିବାରେ ତାଙ୍କର ଆନନ୍ଦ ଯେତିକ, ବାସ୍ତବିକ୍ ଲାଭ ବି ସେତିକ ହୁଏ । ଡିକ୍‌ସିନାରୀ ଦେଖି ବାରମ୍ବାର ପଢ଼ି ପଢ଼ି ସେ କଷ୍ଟ ଇଂରେଜି ବାକ୍ୟମାନଙ୍କର ଅର୍ଥ ବାହାର କରନ୍ତି । ମାତ୍ର ହଠାତ୍ ଦିନେ ମଦନବାବୁଙ୍କର କଣ ଗୋଟାଏ ଝୁଙ୍କ ଉଠିଲା ସେ ପଢ଼ାଘରେ ଆସି ବସିଲେ । କନକ ବାରମ୍ବାର ଖଣ୍ଡେ ଅଙ୍କର ଧାରା ବାହାର କରୁଥାନ୍ତି । ମଦନବାବୁ ପାଞ୍ଚ ମିନିଟ୍ ପର୍ଯ୍ୟନ୍ତ ତାଙ୍କୁ ଲକ୍ଷ୍ୟକରି କହିଲେ, "ଆଚ୍ଛା, ମା, ତୋର ବର୍ତ୍ତମାନ ମେଟ୍ରିକ୍ୟୁଲେଶନ କ୍ଲାସ । ତୁ' ଖଣ୍ଡେ ଅଙ୍କରେ ଏତେ ଗୁଡାଏ ସମୟ ନେଲେ ତ କିଛି ସାରିପାରିବୁ ନାହିଁ !"

"କିନ୍ତୁ କେତେ ଯେ, ସରିବ ନାହିଁ ବାପା ! ଇମିତି ବାରମ୍ବାର ଥରେ କରିଗଲେ, ଆଉ ଥରେ ଦେଖିବା ଦରକାର ପଡ଼ିବ ନାହିଁ, ଭଲ ହୋଇ ମନେ ରହିଯିବ ।"

ମଦନବାବୁ – "ନା, ନା, ସେ ସବୁ ବାଜେ କଥା । ତୋ'ର ଗୋଟାଏ ମାଷ୍ଟର ଦରକାର । ମାଷ୍ଟର ଆସି ଘଣ୍ଟାଏ ଘଣ୍ଟାଏ ପାଠ ମଡ଼େଇ ଦେଇ ଗଲେ ଭଲ ହେବ – ହବ ନାହିଁ ?"

କନକ ବାପାଙ୍କୁ ଭଲରୂପେ ଚହ୍ନିଥିଲେ । ନାହିଁ କରଦେଲେ ଗୋଟାଏ ଝଡ଼ ଆସିଯିବ । ଫଳରେ ରାମବାବୁ ଟିଉସନ୍ ମାଷ୍ଟର ଖୋଜିବା ଭାର ପାଇଲେ । ଗୋପାଳ ଖୋଜାହୋଇ ଆସି ଟିଉସନ୍ ମାଷ୍ଟର ହେଲେ । ପ୍ରଥମେ ଦେହରେ ବଥୂଟାଏ ପରି ମାଷ୍ଟ୍ରେ କନକଙ୍କୁ ଲାଗିଲେ । ମାଷ୍ଟରଙ୍କ ଅସ୍ତିତ୍ୱ ପାସୋରିବାକୁ ଚେଷ୍ଟାକରି ସେ ପଢ଼ିବାରେ ମନଦେଲେ । ମାତ୍ର କିଛିଦିନ ଗଲାପରେ ଆଉ ତାଙ୍କ ଅସ୍ତିତ୍ୱ ଭୁଲିହେଲା ନାହିଁ । ଥରକୁ ଥର ପଢ଼ାରୁ ମୁହଁ ଟେକି ମାଷ୍ଟ୍ରଙ୍କୁ ପ୍ରଶ୍ନ ପଚାରିବାରେ ତାଙ୍କର ଆନନ୍ଦ ବଢ଼ିଲା ଏବଂ ଆଉ କିଛି ଦିନ ପରେ ଆଖି ଦିଓଟିକୁ ବହି ପଢ଼ିବାକୁ ଛାଡ଼ିଦେଇ ଚଗଲା ମନଟା ମାଷ୍ଟରଙ୍କ ବିଷୟ ଚିନ୍ତା କରିବାକୁ ଲାଗିଲା ।

ଗୋପାଳ ଠିକ୍ ଉତ୍ତରେଇଥିଲେ, କନକଙ୍କ ପ୍ରାଣରେ ତାଙ୍କ ପ୍ରତି ପ୍ରେମ ଜାଗରୂକ ହୋଇଥିଲା । କନକ ମଧ୍ୟ ଏକଥା ଜାଣିଲେ, ମାତ୍ର ଜାଣିପାରିଲା ମାତ୍ରେ ବାପାଙ୍କ କଥା ମନେ ପଡ଼ିଗଲା । ବାପାଙ୍କ ଇଚ୍ଛା ଅନିଚ୍ଛା କଥା ବୁଝିବାକୁ ହେବ । ପ୍ରେମର ପାତ୍ର ଯେତେ ଉପଯୁକ୍ତ ହୁଅନ୍ତୁ, ବାପାଙ୍କର ବିନା ଇଚ୍ଛାରେ ପ୍ରେମ କରିବା ତାଙ୍କ ପକ୍ଷରେ ଅସମ୍ଭବ ।

ଏହି କଥା ବିଚାର ବିଚାର କନକଙ୍କର ଅନେକ ସମୟ କଟିଯାଏ । ନିର୍ବାଚନ ପରୀକ୍ଷା ଖୁବ୍ ନିକଟରେ । ତେବେ ଏପରି ଚିନ୍ତା ମୁଣ୍ଡରେ ଥିଲେ ପାଠ ପଢ଼ାହେବ ଅବା କୁଆଡ଼ୁ ?

ସକାଳ ; ସାତଟା ବାଜିବାକୁ ପ୍ରାୟ ପନ୍ଦର ମିନିଟ୍ ଅଛି । କନକଲତାଙ୍କ ଆଗରେ ଇତିହାସ ବହିଟି ପଡ଼ିଛି । ପଢ଼ୁଥିଲାପରି

ବାହାରକୁ ଜଣାଯାଉଥାଏ ; ମାତ୍ର କନକଙ୍କ ମନ ବହିର ନୀରସ ଘଟଣାବଳୀରୁ ବହୁ ଦୂରରେ ଥାଏ ।

ସେ ପୂର୍ବ ରାତ୍ରିର ସ୍ୱପ୍ନକଥା ଭାବୁଥାନ୍ତି । ସେ ଭାବୁଥାନ୍ତି—କିପରି ସ୍ୱପ୍ନରେ ସେ ଶୋଇଥିଲେ, ଗୋଟାଏ କୌଣସି ନିର୍ଜନ ଜାଗାରେ । ହଠାତ୍ ନିଦ ଭାଙ୍ଗିଗଲା, ପଛରେ କିଛି ଗୋଟାଏ ମର୍ମର ଶବ୍ଦ ଶୁଣି ସେ ଚମକି ଉଠି ଚୀତ୍କାର କରି ପଛକୁ ଚାହିଁଦେଲା ବେଳକୁ ଠିଆ ହୋଇଛନ୍ତି, ପ୍ରାଣପ୍ରିୟ—ମାଷ୍ଟରବାବୁ ! ତାଙ୍କ ଆଡ଼କୁ ଚାହିଁ ମୁରୁକି ମୁରୁକି ହସୁଛନ୍ତି—ଠିଆ ହେବା ଠାଣିରୁ ଚାହିଁବା ଭାବ ଭଙ୍ଗୀରୁ ଜଣାଯାଉଅଛି, ସତେ ଅବା ସେ କଣ ଯାଚୁଛନ୍ତି ଏବଂ ସାଙ୍ଗେ ସାଙ୍ଗେ କଣ ମାଗୁଛନ୍ତି ।

କନକ ତନ୍ମୟ ହୋଇ ବହି ଉପରେ ମୁହଁ ରଖି ସ୍ୱପ୍ନ କଥା ବିଚାରୁଥାନ୍ତି । ସ୍ୱପ୍ନର ମାଷ୍ଟର ବାବୁ ଆଖି ଆଗରେ ଉଦୟ ହୋଇ ପ୍ରକୃତ ମାଷ୍ଟର ବାବୁ ଯେ ଆସିଯିବେ, ଏକଥା ମନରୁ ଏକାବେଳକେ ଦୂର ହୋଇଯାଇଥାଏ । ସାତଟା ବାଜିଗଲା । ମାଷ୍ଟର ବାବୁ ଆସି ପହୁଞ୍ଚି କନକଙ୍କ ଆଗରୁ ବହିଟା ଉଠାଇ ନେଇ ପଚାରିଲେ, "ଏ ବହିର କେଉଁ ଗଳ୍ପଟା ପଢ଼ୁଥିଲ କି ?"

କନକ ଅପ୍ରତିଭ ହେଲେ । ମାତ୍ର ଅପ୍ରତିଭ ଭାବ ଲୁଚାଇବାକୁ ଯାଇ ହଠାତ୍ ଉତ୍ତର ଦେଲେ, "Life on the Nile".

ଗୋପାଳ ହସି ହସି ବହି ଖଣ୍ଡି ଟେବୁଲ ଉପରେ ପକାଇ ଦେଇ କହିଲେ, "ନା, The Earth and the Comet". ବେଶ୍ ପଢ଼ୁଛ ତ ? ଅନ୍ୟ ଗୋଟାଏ କିଛି ଭାବନା ହେଉଥିଲା ପରା ?

କନକ—"ତରବରରେ କହୁ କହୁ ଭୁଲଟେ ହୋଇଗଲା । The Earth and the Comet କହିବାକୁ ବସିକି Life on the Nile କହିପକାଇଲି । ଅନ୍ୟ ବିଷୟ ଭାବନା ଆଉ କଣ ?"

ଗୋପାଳ—"ନା, ଭୁଲ ହେବାରୁ ଅନୁମାନ କରୁଥିଲି, ଅନ୍ୟ କିଛି ବୋଧହୁଏ ଭାବୁଥିଲ । ତୁମର କଣ ଭାବିବାର କଥା କିଛି ନାହିଁ କନକ ?"

କନକ ଟିକିଏ ମୁରୁକି ହାସ ହସି କହିଲେ, "ନାହିଁ କଣ ? ପରୀକ୍ଷାରେ କଣ ହବ ସେହି କଥା ତ ସବୁବେଳେ ଭାବୁଛି ।"

ଗୋପାଳ କିଛି ନ କହି ଝରକାବାଟେ ବଗିଚା ଆଡ଼କୁ ଏକ ଦୃଷ୍ଟିରେ ଚାହିଁ ରହିଲେ । ପ୍ରାୟ ଦଶ ପନ୍ଦର ମିନିଟ୍ ଚାଲିଗଲା ।

ଅବଶେଷରେ କନକ କହିଲେ, "ଆପଣ କଣ ମୋତେ କହୁଥିଲେ ? ଆପଣଙ୍କର ତ ଅନେକ ଭାବନା ଅଛି ।"

ଗୋପାଳ ଚିନ୍ତାଭାରାକ୍ରାନ୍ତ ମୁହଁରେ ଟିକିଏ ଫିକା ହାସ ପ୍ରକାଶ କରି କହିଲେ, "ମୋର କଣ ଭାବନା ନାହିଁ ବୋଲି ମୁଁ କହୁଥିଲି କି ? ମୋର ତ ସବୁବେଳେ ଚିନ୍ତା—ମୋର ତ ସବୁ-ବେଳେ ଆଶା । ମୁଁ ଯେ ଆକାଶ କୁସୁମ ତୋଳିବାକୁ ଇଚ୍ଛା କରୁଛି ! ଯେ ଆକାଶ କୁସୁମ ତୋଳିବ, ତାର କାର୍ଯ୍ୟ ତ ଏ ସଂସାରରେ କିଛି ହୋଇନପାରେ । ଖାଲି ଚିନ୍ତା ଓ ଆଶାହିଁ ତାର ସମ୍ବଳ ।"

"ଆପଣ କଣ ତାହାହେଲେ ଗୋଟାଏ କିଛି ଆକାଶ କୁସୁମ ପାଇବା ଇଚ୍ଛାରେ ଅଛନ୍ତି ପରା ? ସେଇଟା କଣ ?"

ଗୋପାଳ—"ଏ ପ୍ରଶ୍ନର ଉତ୍ତର ଆଜି ମିଳିବ ନାହିଁ । ତେବେ ଏତିକି କହିପାରେ, ମୁଁ ଯେଉଁ ଜିନିଷଟିକୁ ପାଇବାକୁ ଲାଳାୟିତ, ତାହା ମୋର ଯେତିକି ପାଖ ସେତିକି ଦୂର ।"

କନକ ଆଉ କିଛି ପଚାରିଲେ ନାହିଁ । ଯେତିକି ପାଖ ସେତିକି ଦୂର ଜିନିଷଟା କଣ ? ସେ ବୁଝିଲେ, ପୁଣି ବୁଝିଲେ ନାହିଁ ।

ଏତେବେଳକୁ ପ୍ରାୟ ସାଢ଼େ ଆଠଟା ହୋଇଯାଇଥିଲା । ଗୋପାଳ କର୍ତ୍ତବ୍ୟ ସ୍ମରଣ କରି ପଢ଼ାଇବାରେ ଅନିଚ୍ଛୁକ ମନକୁ ଧରି

ବାନ୍ଧ ଲଗାଇବାର ଉଦ୍ୟମ କଲେ ଏବଂ କନକ "ଯେତିକ ପାଖ ସେତିକ ଦୂର" ଜନଷଠା ବର୍ଷସ୍ଥୁ ଶନ୍ତା କର କର ପଢ଼ା ଶିଖିବାକୁ ଲାଗିଲେ ।

ସେଦିନ କନକ ଠିକ୍ ସ୍କୁଲରୁ ଫେର ଗୋଡ଼ ହାତ ଧୋଇ ଜଳଯୋଗ କରିବାକୁ ବାହାରିଛନ୍ତି । ପୂର୍ବ କେତେ ରାତି ଧରି ଭଲ ନିଦ ନ ହେଉଥିବାରୁ ସ୍କୁଲଫେରା ମାମୁଲି କ୍ଲାନ୍ତି ଟିକିଏ ଅସାଧାରଣ ଭାବରେ ମୁହଁରେ ଅଙ୍କିତ ହୋଇଯାଇଛି । ମଦନ ବାବୁ ଉଚ୍ଚ ସ୍ୱରରେ ଡାକଦେଲେ, "କନ ! ଏ କନ ! କନକ ! ଶୁଣିଗଲୁ ଟିକିଏ ।"

ଡାକର କାରଣ କଣ ବୁଝିନପାରି କନକ ବସ୍ତ୍ରସ୍ଥରେ ଯାଇ ବାପା ଆଉଜ ଶୋଇଥିବା ଚଉକି ବାଡ଼ ଧରି ଠିଆ ହେଲେ ।

ମଦନ ବାବୁ ଧୂଆଁ ଝିଅଙ୍କ ସୁଲଭ କାଶ ଦୁଇଟା କାଶିଦେଇ ଗମ୍ଭୀର ଭାବରେ କହିଲେ, "କନକ, ତୋ'ର କେତେଦିନ ହେଲା କିଛି ପଢ଼ାପଢ଼ି ହେଉନାହିଁ ?"

କନକ ଟିକିଏ ଇତସ୍ତତଃ ହୋଇ ଉତ୍ତର ଦେଲେ, "କାହିଁକି, ବାପା, ପଢ଼ା ତ ହେଉଚି । ମାଷ୍ଟର ବାବୁ ତ ସବୁଦିନ ଆସୁଚନ୍ତି !"

ମଦନ ବାବୁ—ସେହି ମାଷ୍ଟର ବାବୁ ତ ସବୁଦିନ ଆସୁଚନ୍ତି ବୋଲି ପଢ଼ାପଢ଼ି କିଛି ହଉ ନାହିଁ, କହୁଚି ।"

କନକଙ୍କର ମୁହଁ ଯାକ ଲାଜରେ ନାଲି ପଡ଼ିଗଲା । ସେ କିଛି ନ କହି ଚଉକି ପିଠିରେ ନଖରେ ଗାରେଇବାକୁ ଲାଗିଲେ ।

ମଦନ ବାବୁ ଝିଅକୁ ତୁନି ହେବାର ଦେଖି କହିଗଲେ, "ଦେଖ୍, ଆଜଯାଏ ଯାହା ଅନୁମାନ କରୁଥିଲି ତାହା ସବୁ ତୋ' ତୁନି ରହିବାରୁ ପରିଷ୍କାର ଜଣାପଡ଼ିଗଲା । ତୁ ଆଜିକାଲି ଏତେ ତଳକୁ ଗଲୁଣି ବୋଲି ମୁଁ ଜାଣିପାରିନଥିଲି । କୁଆଡ଼ୁ ଗୋଟାଏ

ଛବଶିଆ ଟୋକା ତତେ ପାଠ ପଢ଼େଇବାକୁ ଆସିଲା, ନଜର ମାନ ବଜାୟ ରଖି ତା' ଠାରୁ କାମ ଆଦାୟ କରନ୍ତୁ କଣ – ତୁ ବସି ତା' ସାଙ୍ଗେ ହସି କଥାବାର୍ତ୍ତାରେ ସମୟ କଟେଇଦେଉଛୁ !"

କନକଙ୍କ ମନରେ ଘୋର ଆଘାତ ଲାଗିଲା । ଯେଉଁ ବାପାଙ୍କୁ ଖୁସି କରିବାକୁ ସେ ଏତେ କଷ୍ଟ ସ୍ୱୀକାର କରନ୍ତି, ସେ ନିଜେ ତା' ଉପରେ ପହରା ଦେଇ ତା'ର ସୁଖ ଟିକକ ସହିପାରୁନାହାନ୍ତି ! ଅଭିମାନରେ ତାଙ୍କ ଆଖି ଲୁହରେ ଛଳ ଛଳ ହୋଇଗଲା । ସେ କହିଲେ, "ବାପା, କଥାବାର୍ତ୍ତା ହେଲେ କଣ ମୁଁ ପାଠ ପଢ଼ୁ–ନାହିଁ ?"

କଥା କହିବା ସ୍ୱରରୁ ଏବଂ ଆଖିର ଅବସ୍ଥାରୁ ମଦନ ବାବୁ ଝିଅର ହୃଦୟର ଭାବ ମନେ ମନେ ବୁଝିନେଲେ ପରା ! ତାଙ୍କ ହୃଦୟଟା ଟିକିଏ ତରଳିଗଲା । ସେ ପଛ ଆଡ଼କୁ ଟିକିଏ ବୁଲି ପଡ଼ି କିଞ୍ଚିତ ମୃଦୁ ଭାବରେ କହିଲେ, "ନାହିଁ ମ, ମା ! ମୁଁ ତା' କହୁ ନାହିଁ ଯେ, ମାଷ୍ଟରଟା ହେଲା ଆମ ଚାକର । ତୁ' ତାକୁ ସେହି ଦୃଷ୍ଟିରେ ନ ଦେଖିଲେ, ତା ସାଙ୍ଗେ ବସି ଆଳାପ କଲେ ତା' ମୁହଁ ବଢ଼ି ଯିବ ଯେ ! ତା' ଠାରୁ ଆମ ଦୁ'ଘଣ୍ଟାର କାମ ଆମେ ଆଦାୟ କରି ନେବା ଦରକାର ।"

କନକ ଆଉ କିଛି କହିଲେ ନାହିଁ । ଆଖିରୁ ଦୁ'ଧାର ଲୁହ ଗାଲରେ ବହି ଆସି ଛାତି ଉପର ଲୁଗାକୁ ଓଦା କରିଦେଲା । ସେ ଗୋଟିଏ ଗୋଟିଏ ଚାଲିଗଲେ ।

ପୂଜାରୀ ଚାକର କିଛି ଜାଣି ପାରିବେ ଏହି ଭୟରେ ଖାଇବା ଘରକୁ ଯାଇ ଖାଇବସିଲେ ; ମାତ୍ର ଖାଦ୍ୟ ଆଉ ରୁଚିଲା ନାହିଁ; ଖାଇବା ଜିନଷ ସାଙ୍ଗରେ ଲୁହ ମିଶିଯାଇ ସେଗୁଡ଼ାକ ଅଖାଦ୍ୟ ହୋଇଗଲା ।

ଜଳଖିଆ ଥାଳ ପାଖେ ବସି କନକ ବହୁତ କାନ୍ଦିଲେ । କାନ୍ଦି କାନ୍ଦି ବୋଉ କଥା ମନେ ପଡ଼ିଗଲା । ବୋଉ ବଞ୍ଚିଥିଲେ ତା' ଆଗେ ହୃଦୟ ଖୋଲିଦେଇଥାନ୍ତେ । ସେ ତାଙ୍କ ଦୁଃଖ ବୁଝିଥାନ୍ତେ । ବାପାଙ୍କର ତ ହୃଦୟ ନାହିଁ । ତାଙ୍କର ଏକମାତ୍ର ଚିନ୍ତାର ସାମଗ୍ରୀ ଟଙ୍କା ।

କନକ କାନ୍ଦି କାନ୍ଦି ପ୍ରତିଜ୍ଞା କଲେ—ବାପାଙ୍କର ଏତେ କଥା ସହିଛନ୍ତି । ମନ ପୋଡ଼ିଯାଉ ପଛେ, ହୃଦୟ ଭାଙ୍ଗିଯାଉ ପଛେ, ଏଥରଟା ମଧ୍ୟ ସହିବାକୁ ପଡ଼ିବ । ଏଥର ମଧ୍ୟ ବାପାଙ୍କ ମନ ରଖିବା ପାଇଁ ନିଜର ସର୍ବସ୍ୱ ବଳିଦେବାକୁ ହେବ ।

## ତିନି

ପନ୍ଦର ଦିନ ବିତିଗଲା । ଗୋପାଳ ପ୍ରତିଦିନ ପଢ଼ାଇବାକୁ ଆସି କନକଙ୍କର ମ୍ରିୟମାଣ ଭାବ ଦେଖୁଥାନ୍ତି । ସେ ଆସି ବସି ପୂର୍ବ ପରି କୌଣସି ପ୍ରସଙ୍ଗ ପକାଇଲେ କନକ ଦୀର୍ଘ ନିଶ୍ୱାସଟିଏ ଛାଡ଼ି ଉଦାସୀନ ଭାବରେ କଥାବାର୍ତ୍ତାରେ ଯୋଗ ଦିଅନ୍ତି ଏବଂ କଥାବାର୍ତ୍ତା ବେଳେ ପଢ଼ାବହି ଖୋଲିବା ଏବଂ ଲେଖା ଗୋପାଳଙ୍କ ଆଡ଼କୁ ବଢ଼ାଇବା ପ୍ରଭୃତି ବାଧ୍ୟଭାବଭଙ୍ଗୀଦ୍ୱାରା ଦେଖାଇଦିଅନ୍ତି—କଥାବାର୍ତ୍ତା ପ୍ରଭୃତି କରିବାଠାରୁ ପଢ଼ା ପଢ଼ି ବିଷୟ ଚର୍ଚ୍ଚା କରିବାକୁ ତାଙ୍କର ବେଶି ଇଚ୍ଛା ।

ଗୋପାଳ କନକଙ୍କର ଏ ଭାବ ଦେଖି ମର୍ମାହତ ହୁଅନ୍ତି । କେତେ ପ୍ରକାର ଚିନ୍ତା ମନମଧ୍ୟରେ ଆସି ଖେଳିଯାଏ । ତାଙ୍କ କଥା ପୂର୍ବେ କନକଙ୍କର କେଡ଼େ ଶ୍ରୁତିପ୍ରିୟ ହେଉଥିଲା । ସେ କଥାବାର୍ତ୍ତା ଆରମ୍ଭ କରିଦେଲେ କନକ ପାଠ ଭୁଲିଯାଇ ଆଖି ବାଟେ ତାଙ୍କ କଥା ପିଇଯାଉଥାନ୍ତି । ଗୋପାଳ ପଢ଼ା ପଢ଼ି ଆରମ୍ଭ କରିବାର

ଉଦ୍ୟମ କଲେ ନାନାପ୍ରକାର ଇଙ୍ଗିତଦ୍ୱାରା ବାଧା ଦିଅନ୍ତି । ଏବେ ହଠାତ୍ ଏ କି ପରିବର୍ତ୍ତନ ! ଗୋପାଳ କିଛି ବୁଝି ନ ପାରି ଖାଲି ଅନିଦ୍ରା ହୋଇ ରାତିଯାକ ମିଞ୍ଜି ମିଞ୍ଜି ଲଣ୍ଠନ ଆଲୁଅରେ ବସାଘର ଛାତକୁ ଚାହିଁ ରହିଥାନ୍ତି । ଦିନଯାକ କୌଣସି କାର୍ଯ୍ୟରେ ମନ ଲାଗେ ନାହିଁ—କନକଙ୍କର କଣ ବିପଦ ପଡ଼ିଛି, କନକଙ୍କର ମନ କାହିଁକି ଖରାପ, ଏହି ଚିନ୍ତା ସବୁବେଳେ ତାଙ୍କ ମନକୁ ଅଧିକାର କରି ଅନ୍ୟ କୌଣସିଥିରେ ଲଗାଇଦିଏ ନାହିଁ ।

ସକାଳ ବେଳ । ଶ୍ରାବଣ ମାସ ମେଘ ପୂର୍ବରାତିରେ ବର୍ଷା କରି କରି କ୍ଳାନ୍ତରେ ଆକାଶ ଉପରେ ପଡ଼ିରହିଛି । ବଗିଚାର ଗଛ ପତ୍ରଗୁଡ଼ିକ ପୂର୍ବରାତି ବର୍ଷାମାଡ଼ିକଷ୍ଟ କ୍ରମେ କ୍ରମେ ଦୂରକରି ସତେଜ ଦିଶୁଛି । ଗୋପାଳ କନକ ପଢ଼ାଘର ଚଉକିରେ ଯାଇ ବସିଲେ । ନିଦ୍ରାର ଅଭାବରେ ତନ୍ଦ୍ରା ଏବଂ ଚିନ୍ତାର ଭାର ଯୋଗୁଁ ଆଖି ଦୁଇଟି ଅଧେ ଅଧେ ବୁଜି ହୋଇଯାଉଥାଏ ।

କନକ ଆସି ଟେବୁଲ ଆର ପାଖରେ ପଡ଼ିଥିବା ଚୌକିରେ ସେହିପରି ମନ ମାରିଦେଇ ବସିଲେ । ପ୍ରାୟ ୫ ମିନିଟ୍ ନିଃଶବ୍ଦରେ ଚାଲିଗଲା ପରେ ଗୋପାଳ କନକଙ୍କର ଅବସନ୍ନ ମୁଖକୁ ଚାହିଁ ପଚାରିଲେ "କନକ ଆଜି ତୁମର କାହିଁକି ଏତେ ଡେରି ?"

କନକ ଚେଷ୍ଟାକରି ଟିକିଏ ହସି କହିଲେ, "କାହିଁ, ମୋର ତ ଡେରି ହୋଇନାହିଁ । ଆପଣ ଆଜି ଆଗରୁ ଆସିଛନ୍ତି ।"

ଗୋପାଳ କିଛି ନ କହି ପକେଟରୁ ଘଡ଼ିଟି ବାହାର କରି ତାକୁ ଚାହିଁ ରହିଲେ—ସତେ ଅବା ଯେପରି ଘଡ଼ିରେ କେତେ ବାଜିଛି ଦେଖି ଜାଣିପାରୁନାହାନ୍ତି ବା ଜାଣି ଆଗରୁ ଆସିଛନ୍ତି ହିସାବ କରିପାରୁନାହାନ୍ତି !

କିଛି ସମୟ ଗଲା ପରେ ହଠାତ୍ ନିଦରୁ ଉଠିଲା ପରି ଗୋପାଳ କହିଲେ—"କନକ, ତୁମକୁ ଆଜି ଗୋଟିଏ କଥା ପଚାରିବାର ଅଛି ।"

କଣ ପ୍ରଶ୍ନ ହେବ କନକ ଜାଣିପାରିଲେ ପରା ? ଭୟ ଏବଂ ଉତ୍କଣ୍ଠାରେ ସେ କ୍ଷୀଣ ସ୍ୱରରେ ପଚାରିଲେ "କଣ ?"

ଗୋପାଳ—ତୁମେ କେତେଦିନ ହେଲା କାହିଁକି ଘାରି ମନ-ଦୁଃଖରେ ଥିଲାପରି ଜଣା ଯାଉଛ ।

ସତେ ଆଶ୍ଚର୍ଯ୍ୟ ହେଲାପରି କନକ ଉତ୍ତର ଦେଲେ, "ମୋ ମନଦୁଃଖ ହୋଇଛି ? କାହିଁ ନାହିଁ ତ !"

ଗୋପାଳ—ନାହିଁ କଲେ ମୁଁ ଭୁଲିଯିବି ନାହିଁ । ପନ୍ଦର ଦିନ ହେଲା ମୁଁ ଦେଖି ଆସୁଛି ତମର ସେ ଆଗକାର ଫୁର୍ତ୍ତି ନାହିଁ । ତମେ ଯେତେ ନାହିଁ କଲେ ତମ ଦୁଃଖଟା ଯେ ମୁହଁରେ ବାହାରେ ଦିଶି ଯାଉଛି ।

କନକ ଦୀର୍ଘନିଶ୍ୱାସଟିଏ ପକାଇ କହିଲା, "ନାହିଁ, ଦୁଃଖ କଣ ?" ବୋଧହୁଏ ମନେ ମନେ ବିଚାରିଲେ, "ଆଚ୍ଛା, ଯଦି ଦୁଃଖଟା ମୁହଁରେ ଦିଶିଯାଉଛି, ଏଥର ଦିଶି ନ ଯିବାର ଉଦ୍ୟମ କରାଯିବ ।"

ଘଡ଼ିଏ ଖଣ୍ଡେ କଟିଗଲା । କନକଙ୍କ ମୁହଁରୁ ଦୁଃଖର ଛାୟା କ୍ରମେ କ୍ରମେ ଅପସରିଯାଇ ଗୋପାଳଙ୍କ ମୁହଁକୁ ଆବୁରି ରହିଲା । କନକ ତାଙ୍କୁ ବିଶ୍ୱାସ କରୁନାହାନ୍ତି, ହୃଦୟର କଥା ତାଙ୍କ ଆଗରେ ଖୋଲି କହିବାକୁ ତାଙ୍କର ମନ ହେଉ ନାହିଁ । ମାତ୍ର ସେ ନିଜେ—ନିଜ ହୃଦୟର ଗଭୀରତମ ପ୍ରଦେଶର କଥା ତାଙ୍କ ଆଗେ କହି-ଦେବାକୁ ତିଳେମାତ୍ର କୁଣ୍ଠିତ ନୁହନ୍ତି, ବରଂ କିପରି କନକଙ୍କ ଆଗେ ସବୁ କହିବେ ଏଥିପାଇଁ ସେ ସବୁବେଳେ ବ୍ୟସ୍ତ—କନକ ଆଗେ ସବୁ କହିଦେଲେ ତାଙ୍କ ହୃଦୟ ଉଶ୍ୱାସ ହୋଇଯାଏ । ଏହି କଥା ବିଚାରି

ବିସ୍ମୟର ଆତ୍ମଗ୍ଲାନିରେ ତାଙ୍କ ମୁହଁ ବିକୃତ ହୋଇଗଲା । ପରେ ପରେ ଅଭିମାନ ହୃଦୟକୁ ଅଧିକାର କରିବା ସଙ୍ଗେ ସଙ୍ଗେ ଆଖି ଛଳ ଛଳ ହୋଇ ଆସିଲା ।

କନକ ଏ ଛଳ ଛଳ ଆଖି ଦେଖି ସହିପାରିଲେ ନାହିଁ । ପିତାଙ୍କ କଥା ପରେ ଜଳଖିଆ ଥାଳ ପାଖରେ କରିଥିବା ପ୍ରତିଜ୍ଞା ପାସୋର ହୋଇଗଲା । ସେ ପଚାରିଲେ, "ଆପଣ କାହିଁକି ଏପରି ଦୁଃଖିତ ହୋଇଛନ୍ତି ?"

ଗୋପାଳ କିଛି ଉତ୍ତର ନଦେଇ ଉଗ୍ର୍ୟକ ଦୃଷ୍ଟିରେ କନକଙ୍କୁ ଚାହିଁ ରହିଲେ । ବର୍ତ୍ତମାନ ତାଙ୍କର ଏ ମୁହଁକୁ ଦେଖିଲେ ଆଉ କାହାର ମନରେ ଦୁଃଖ ରହିବ ?

ନାଲି ଓଠ ମଧ୍ୟରେ ସୁନ୍ଦର ଦାନ୍ତଗୁଡ଼ିକ ବାହାର ରମଣୀୟ ଦିଶୁଥାଏ । ଚପଳ ଆଖିଗୁଡ଼ିକ ଗୋପାଳଙ୍କ ମନର ଦୁଃଖକୁ କଟାକ୍ଷ ପାତରେ ଦୂରକରି ଦେଉଥାଏ । ସେ ଆଖିର ଜୋର୍‌ରେ ଗୋପାଳଙ୍କ ଦୁଃଖ ତଡ଼ି ହୋଇଗଲା । ସେ ତୃପ୍ତିରେ ମନ୍ଦ ହସି ହସି କହିଲେ, "କନକ, ତମର ଦୁଃଖ ହେତୁ ମୋର ଦୁଃଖ ହୋଇଥିଲା ସିନା ! ବର୍ତ୍ତମାନ ତମର ତ ଦୁଃଖ ନାହିଁ, ମୋର ରହିବ କିପରି ?"

ଦୁଷ୍ଟାମି କରି କନକ ପଚାରିଲେ, "ମୋ ଦୁଃଖ ସଙ୍ଗେ ଆପଣଙ୍କର ସମ୍ବନ୍ଧ କଣ ଅଛି କି ?"

ଗୋପାଳଙ୍କ ରୁଦ୍ଧ ହୃଦୟର ଦ୍ୱାର ଫିଟିଗଲା । ସେ କନକ ଆଡ଼କୁ ଆବେଗରେ ଚାହିଁ କହିଗଲେ, "ତୁମ ଦୁଃଖ ସଙ୍ଗେ ମୋ ଦୁଃଖର କି ସମ୍ବନ୍ଧ ପଚାରୁଛ, କନକ ! ମୁଁ ଗଲା ପନ୍ଦର ଦିନ ଯେପରି କଟାଇଛି ଯଦି ଜାଣିପାରନ୍ତ, ତାହାହେଲେ ଏପରି ପଚାରନ୍ତ ନାହିଁ । ତୁମ ମୁହଁରେ ପନ୍ଦର ଦିନ ହେଲା ଦୁଃଖର ଗୋଟାଏ ଛାୟା ଦେଖି ମୋତେ ସଂସାର ବିଷପରି ଲାଗିଯାଉଛି । ମୁଁ ରାତି ରାତି

ଉଜାଗର ରହି ଚିନ୍ତା କରିଛି—ତୁମର ଦୁଃଖ ଯଦି ମୋ ପ୍ରାଣ ବିନିମୟରେ ଦୂରୀଭୂତ ହୁଅନ୍ତା, ଅକାତରେ ଜୀବନ ମୂର୍ଚ୍ଛିଦେଇ କୃତାର୍ଥ ହୁଅନ୍ତି ।"

ଏ କଥା ଏବଂ ମାଷ୍ଟର ବାବୁଙ୍କ ପ୍ରେମବିହ୍ୱଳ ଆକୃତି ଦେଖି କନକ ଯେତିକ ପ୍ରୀତ ସେତିକ ବ୍ୟଥିତ ହେଲେ ଏବଂ ଦୁଷ୍ଟାମି କରି ପ୍ରଶ୍ନଟା ପଚାରିବା ହେତୁ ଅନୁତପ୍ତ ହେଲେ । ବାପାଙ୍କ କଥା ରଖିବାକୁ ହେବ ; ମାତ୍ର କଥା ରଖିବାର ପ୍ରଣାଳୀ ତ ଏପରି ନୁହେଁ ।

କନକ ଏପରି ଚିନ୍ତାକରି କଣ କହିବାକୁ ଯାଉଥିଲେ, ଗୋପାଳ ତାଙ୍କୁ ସୁବିଧା ନ ଦେଇ ପୁଣି କହିଲେ, "କନକ, ମନେ ଥିବ ଦିନେ କହିଥିଲି, ମୁଁ ଯାହା ପାଇବାକୁ ଇଚ୍ଛା କରୁଛି, ସେ ମୋର ଯେତିକ ଦୂରରେ ସେତିକ ପାଖରେ । ତାହା କଣ ବୋଲି ତମେ ସେଦିନ ପଚାରିଥିଲ । ମୁଁ ସେଦିନ କହିନଥିଲି ; ମାତ୍ର ଦେଖୁଛି ବିଳମ୍ବରେ ଫଳ ନାହିଁ—ଆଜି କହିବି, ଶୁଣିବ ?"

କନକ ଆଗ ବିଚାରିଲେ କହିଦେବେ—"ଶୁଣିବା ଦରକାର ନାହିଁ ।" ପୁଣି ବିଚାରିଲେ, ହୁଏତ ସେ କଥାର ଉତ୍‌ଥାପନ ହେଲେ କଥା ଅନ୍ୟ ଦିଗ ଅବଲମ୍ବନ କରିବ । ଅନ୍ୟ କଥା ପଡ଼ିଗଲେ ନିଜେ ରକ୍ଷା ପାଇବେ । ସୁତରାଂ କିଛି ନ କହି ତୁନି ରହିଲେ ।

ଗୋପାଳ ଚଉକି ପାଖକୁ ଘୁଞ୍ଚେଇ ଆଣି ଏକ ନିଶ୍ୱାସରେ କହିଗଲେ, "କନକ, ସ୍ନେହର କନକ ! ସେ ଜିନିଷଟି ତୁମେ । ତୁମେ ମୋର ଖୁବ ଦୂରରେ । ତୁମେ ବଡ଼ ଘରର ଝିଅ । ତୁମ ବାପା ପେନ୍‌ସନ୍‌ପ୍ରାପ୍ତ ଡେପୁଟି ମାଜିଷ୍ଟ୍ରେଟ୍ । ମୁଁ ଜଣେ ନଗଣ୍ୟ ମଫସଲିଆ ଲୋକର ପୁଅ । ମାତ୍ର କନକ, ତୁମେ ମୋର ଖୁବ ପାଖରେ -- ମୋ ହୃଦୟକୁ ଖୋଲି ଦେଖ, ତୁମେ ସେଥିରେ ଶ୍ରେଷ୍ଠ-

ତମ ଆସନରେ ବସିଛ – ତୁମେ ଦିନରାତି ମୋର ଚିନ୍ତାର ସାମଗ୍ରୀ— ତୁମ କଥା ଭାଳି ଭାଳି ମୋର ଅନେକ ଦିନ ହେଲା ନିଦ ନାହିଁ – କନକ, ସ୍ନେହର କନକ ! ତୁମେ ମୋର ହେବ ନାହିଁ ? ତୁମକୁ ମୋର ଚିରସଙ୍ଗିନୀ କରି ପାଇବା ଆଶାଟା କଣ ଧୃଷ୍ଟତା ?"

କନକ ଏକଥା ଶୁଣି କରିବେ କଣ ? ଏ କଥାର କି ଉତ୍ତର ଦେବେ ? ପ୍ରାଣପ୍ରିୟ ହୃଦୟ ଖୋଲିଦେଇଛନ୍ତି । ମନ ହେଲା ନିଜେ ମଧ୍ୟ ହୃଦୟ ଖୋଲିଦେବେ, କହିବେ, "ପ୍ରିୟ, ତୁମେ ମଧ୍ୟ ମୋର ଅନେକ ଦୂରରେ ଥିଲ, ଆଜି ପର୍ଯ୍ୟନ୍ତ ମୁଁ ବସିରୁଥିଲି ତୁମେ ମୋତେ ଗ୍ରହଣ କରିବାକୁ, ମୋ ପରି ଗାଉଁଲି ଅଶିକ୍ଷିତାର ଭାର ବହନ କରିବାକୁ ପ୍ରସ୍ତୁତ ହେବ ନାହିଁ । ଆଜି ତୁମେ ନିଜେ ମୋତେ ଗ୍ରହଣ କରିବାକୁ ପ୍ରସ୍ତୁତ ହୋଇଛ, ପ୍ରିୟ ! ମୋର ଆଉ ଚିନ୍ତା ନାହିଁ । ମୋତେ ଗ୍ରହଣ କର, ମୁଁ ତୁମର ଉପଯୁକ୍ତା ହେବାର ଚେଷ୍ଟା କରିବି ।"

କିନ୍ତୁ ମନେ ପଡ଼ିଗଲା ବାପାଙ୍କ କଥା । ଆଶା ଦେଲେ, ହଁ କଲେ, ଫଳ କଣ ? ବାପା ତ ଏକଥା ଶୁଣିବା ମାତ୍ରେ ଅଗ୍ନିଶର୍ମା ହୋଇଯିବେ – କେବେ ହେଲେ ଯିବା କରେଇ ଦେବେ ନାହିଁ ।

କନକ ଚିନ୍ତିତ ହୋଇ ତଳକୁ ଚାହିଁ ରହିଲେ ।

ଗୋପାଳ ଏହା ଦେଖି କହିଲେ, "କନକ, ଚିନ୍ତିତ ହେଉଛ କାହିଁକି ? ଯଦି କିଛି ସ୍ଥିର କରିନପାରୁଛ, ମତେ ସମୟ ଦିଅ । ତୁମର କଥାକୁ ଅପେକ୍ଷା କରି ଯୁଗେ ମଧ୍ୟ ରହିପାରିବି ।"

ଆଉ କନକ ସମ୍ଭାଳିପାରିଲେ ନାହିଁ । ତାଙ୍କ ଆଖିରୁ ଦରଦର ଲୁହ ଗଡ଼ିବାକୁ ଲାଗିଲା । ସେ ଖାତାରୁ ଖଣ୍ଡେ କାଗଜ ଚିରି ଲେଖିଦେଲେ, "ଆପଣଙ୍କ କଥା ଶୁଣି ମୁଁ ବିଚଳିତ ହୋଇଯାଉଛି ।

ଆପଣ ଗୁରୁ, ମୁଁ ଆପଣଙ୍କ ଶିଷ୍ୟ। ମୋତେ ଏପରି କହିବା ଉଚିତ କି ଅନୁଚିତ, ଆପଣ ମୋ ଠାରୁ ବେଶି ଜାଣିଥିବେ ।"

କାଗଜଖଣ୍ଡ ମାଷ୍ଟରଙ୍କ ପାଖକୁ ବଢ଼ାଇ ଦେଇ କନକ ସେ ଘରୁ ଉଠି ନିଜ ଶୋଇବା ଘରକୁ ମନ ପୂରେଇ କାନ୍ଦିବାକୁ, ତ୍ୟାଗର ତାପ ଲୋକ ଚକ୍ଷୁ ଅନ୍ତରାଳରେ ଭୋଗିବାକୁ, ଚାଲିଗଲେ ।

ଗୋପାଳ କଳ୍ପିତ ସ୍ୱର୍ଗରୁ ରସାତଳରେ ପଡ଼ିଲେ । ତାଙ୍କ ମୁଣ୍ଡ ଭ୍ରମ ହୋଇଗଲା । ସେ କିଂକର୍ତ୍ତବ୍ୟବିମୂଢ଼ ହୋଇ ଓଲୁ ପରି ଚିଠି ଖଣ୍ଡିକୁ ବାରମ୍ବାର ବକ ବକ ହୋଇ ଚାହିଁ ବାହାରିଯିବାକୁ ଚଉକିରୁ ଉଠୁଛନ୍ତି, ଭିତରୁ ଶବ୍ଦ ହେଲା, "ମାଷ୍ଟ୍ରେ, ରହ ରହ, ତମ ସାଙ୍ଗେ ଟିକିଏ କାମ ଅଛି ।" ଶବ୍ଦ ହେବା ସାଙ୍ଗେ ସାଙ୍ଗେ ପଢ଼ାଘରର ଭିତର ଦୁଆରଟା ଫିଟିଗଲା ଏବଂ ମଦନବାବୁ କନକ ଟିକକ ଆଗରୁ ଯେଉଁ ଚଉକିରେ ବସିଥିଲେ, ସେଥିରେ ଆସି ବସିଲେ ।

ମଦନବାବୁଙ୍କ ଆଖି ନାଲି ଦିଶୁଥାଏ—ସତେ ଅବା ଆଖି ଭିତରେ ନିଆଁ ଜଳୁଛି । ଦାଢ଼ିଗୁଡ଼ାକ ରାଗରେ ଖାଡ଼ା ଖାଡ଼ା ହୋଇଯାଇଥାଏ । ଗୋପାଳ ସେ ଆଖି ଓ ସେ ଦାଢ଼ି ଦେଖି ଆଶଙ୍କା କରିଥିଲେ, ମଦନବାବୁ ତାଙ୍କ ଉପରେ ଗରଳ ଝାଡ଼ିବେ । ମାତ୍ର ମଦନ ବାବୁ ସେପରି କିଛି ନ କରି ଅତି ଧୀର ଗମ୍ଭୀର ଭାବରେ ପଚାରିଲେ, "ମାଷ୍ଟର ବାବୁ, ଆପଣଙ୍କ ଘର କେଉଁଠାରେ ?"

ଗୋପାଳ ଅନ୍ୟମନସ୍କ ଭାବରେ ଉତ୍ତର ଦେଲେ, "କଟକ ଜିଲାର ରାଏରଙ୍ଗପୁର ଗ୍ରାମରେ ।"

ମଦନ ବାବୁ ପୁଣି ପଚାରିଲେ, "ଆଚ୍ଛା, ଆପଣଙ୍କ ବାପା କଣ କରନ୍ତି ?

ଗୋପାଳ—"ମୋର ବାପା ମା କେହି ନାହାନ୍ତି । ମୋର ଗୋଟିଏ ଜ୍ୟେଷ୍ଠ ଭାଇ ଥିଲା । ଏବେ କେତେ ଦିନ ହେଲା ତାକୁ ଖୋଜା ହେଉଛି ।"

ମଦନ ବାବୁ—"ଆପଣଙ୍କର ସମ୍ପତ୍ତି ବାଡ଼ି କଣ ?"

ଗୋପାଳ—"ସମ୍ପତ୍ତି ସେପରି କିଛି ନୁହେଁ । ମୋଟରେ ୪-୫ ହଜାର ଟଙ୍କାର ହେବ ।"

ମଦନ ବାବୁ ନାଲି ଆଖିକି ଟିକିଏ ବିଶେଷ ଭାବରେ ବିଚରି ଗୋପାଳ ଉପରେ ରଖି କହିଲେ, "ଏକଥା ସବୁବେଳେ ମନେଥାଏ ତ ? ଘର ମଫସଲର କେଉଁ କଣରେ ; ବାପ ମା କେହି ନାହାନ୍ତି ; ସମ୍ପତ୍ତି ଏଠା ପାନବାଲାଙ୍କ ସଂପତ୍ତି ଅପେକ୍ଷା କମ୍ । ବି. ଏ. ଖଣ୍ଡି ପାଶ୍ କରିଛ ବୋଲି ମନରେ ଭାରି ଦମ୍ଭ ପରା ! ଆଜିକାଲି ବଜାର ଛକ ମୁଣ୍ଡରେ ବସିଲେ ବି. ଏ. ଗୁଡ଼ାକ ପଞ୍ଝା ପଞ୍ଝା ହୋଇ ବଜାରରେ ବୁଲିବାର ଦେଖିବ ।"

ଗୋପାଳ ଏସବୁ ଶୁଣି ସ୍ଥିର ହୋଇ ବସି ରହିଲେ, କୌଣସି ଉତ୍ତର ଦେଲେ ନାହିଁ । କାନକର ଚଠି ଖଣ୍ଡିକ ହାତରେ ଧରି ମୋଡ଼ୁଥାନ୍ତି ।

ଗୋପାଳ ତୁନି ହୋଇ ରହିବାର ଦେଖି ମଦନବାବୁଙ୍କର ରାଗ ବୋଧହୁଏ ଟିକିଏ ବଢ଼ିଗଲା । ସେ ଗର୍ଜନ କରି କହି ଉଠିଲେ, "ମୂର୍ଖ, ତୋର ପୁଣି ଏତେ ଆସ୍ପର୍ଦ୍ଧା ! ତୁ ମୋ' ଝିଅ ସାଙ୍ଗରେ ବସି ଆମୋଦ କରୁଛୁ ? ପାଷଣ୍ଡ, ନିଜର ଅବସ୍ଥା ବୁଝି, ଆମ ତୋ' ପାର୍ଥକ୍ୟଟା ହୃଦୟଙ୍ଗମ କରି ଚଳିପାରିଥିଲେ, ତୋ'ର କାର୍ଯ୍ୟଟି ଏତେ ଶୀଘ୍ର ଯାଇନଥାନ୍ତା । ଯା, ଅଧମ, ନିଜର ଚପଳତା ନିମନ୍ତେ ବେକାର ହୋଇ ବସି ଅନୁତାପ କରୁଥିବୁ । ଆଉ ଦିନେ ମୋ ଘର ଭିତରେ ବା ଦୁଆର ମୁହଁରେ ତୋ ମୁହଁ ଦେଖିଲେ ସିଧା ସିଧା

ପୁଲିସ ଥାନାକୁ ନେଇ ତୋ' 'ପ୍ରେମିକପଣ ଛଡ଼େଇଦେବ । ଦେଖ ହେ, ଏ ଶ୍ରେଷ୍ଠଲୋକଗୁଡ଼ାଙ୍କର କେଡ଼େ ଅହଙ୍କାର । ଆମ—"

ଗୋପାଳ ବାଧା ଦେଇ କହିଲେ, "ଶ୍ରେଷ୍ଠ ଲୋକଙ୍କ ଅହଙ୍କାର ବିଷୟରେ ବକ୍ତୃତା ଶୁଣିବାର ପ୍ରୟୋଜନ ନାହିଁ । ମୁଁ ଆଉ ଏ ଦ୍ୱାରକୁ ଆସିବି ନାହିଁ ବୋଲି ଆଗରୁ ସ୍ଥିର କରିଥିଲି । ଆପଣ ଏତେଗୁଡ଼ାଏ କହି ବୃଥା ସମୟ ନଷ୍ଟ କଲେ ମାତ୍ର ।"

ଗୋପାଳ ଏହା କହି ଧୀରେ ଧୀରେ ଉଠି କନକଙ୍କ ଘରୁ ବାହାରିଗଲେ ।

## ଚାରି

ଯେତେବେଳେ ସେ ସେରେ ଚୁଡ଼ା ଆଉ ପଇସାଟିକର ଅଖା ଗୁଡ଼ ମଇଳା ଚିରା ଗାମୁଛାରେ ବାନ୍ଧି ଏ ଗାଁରୁ ସେ ଗାଁ ହଉଥିଲେ, ସେତେବେଳେ ତାଙ୍କ ନାଁ ଥିଲା, ବାସୁଆ ହରିଚନ୍ଦନ । ଯେ ତାଙ୍କୁ ଦେଖି ତାଙ୍କ ଉପରେ ଦୟା କରି ମୁଠିଏ ଖାଇବାକୁ ଡାକୁଥିଲା, ସେ ତାଙ୍କୁ କହୁଥିଲା, "ବାସୁ", ଆଉ ତାଙ୍କର ସେକାଳ ରୂପ ଦେଖି ଆକୃତି ଅନୁସାରେ ପ୍ରକୃତି ହୋଇଥିବ ବୋଲି ଯେ ସନ୍ଦେହ କରୁଥିଲା ସେ ତାଙ୍କୁ କହୁଥିଲା 'ବାସୁଆ'—'ଚୋର ବାସୁଆ', 'ହୁଣ୍ଡୁମ୍ବା ବାସୁଆ' ଏହିପରି ଆଉ କେତେ 'ବାସୁଆ' ; କିନ୍ତୁ ପିଲାଦିନୁ ସେ ବୁଝିଥିଲେ, "ଆଲୋ ମଉସା ଜଡ଼ ପଇସା ।" ଏହି ପଇସା ରଖିବା ନିମନ୍ତେ ସେ ନିଜର ନିତ୍ୟ ଆବଶ୍ୟକ ଦ୍ରବ୍ୟ ବିଷୟରେ ତ୍ୟାଗ ସ୍ୱୀକାର କରୁଥିଲେ ; ଏହି ପଇସା କିଛି ସେ ପାଇପିବା ଲୋଭରେ ନିଜର ଏକମାତ୍ର କନ୍ୟାଟିକୁ ହରିଆ ଗୋଳ ପୁଅ ସାଙ୍ଗେ ବାହା ଦେଇଥିଲେ ଏବଂ ବରଜୁ ଦାସ ଗୋବିନ୍ଦ ପଟ୍ଟନାୟକଙ୍କ ନାଁରେ କରିଥିବା ମିଛ

ମକଦ୍ଦମାରେ ସାକ୍ଷୀ ହୋଇଯାଇଥିଲେ । କିନ୍ତୁ ଏସବୁ ଅନେକ ପୂର୍ବର କଥା ।

ସତ୍ୟଠାରୁ, ନ୍ୟାୟଠାରୁ, ପିଲା ମାଇପଙ୍କଠାରୁ, ଏପରିକି ଆପଣାଠାରୁ ବେଶୀ କରି ଯେ ଲକ୍ଷ୍ମୀଙ୍କି ଚାହିଁଲା, ଲକ୍ଷ୍ମୀ ତାକୁ ଭାରି ପସନ୍ଦ କରନ୍ତି । ଦିନକୁ ଦିନ ବାସୁଆ ଘରେ ପୁରୁଣା ଧାନର ପରିମାଣ ବଢ଼ିଲା । ପୁରୁଣା ଧାନ ଟଙ୍କା ରୂପ ଧାରଣ କରିବା ସାଙ୍ଗେ ସାଙ୍ଗେ ଏପରିକି ଧାନ କିଣିବା ପାଇଁ ଲୋକେ ବାସୁଆ ଦୁଆରକୁ ଯିବା ସାଙ୍ଗେ ସାଙ୍ଗେ ବାସୁଆ ହେଲା ବାସୁଦେବ, 'ତୁ' ପରିବର୍ତ୍ତେରେ ହେଲା 'ତୁମେ'—'ଆପଣ' । ଆଉ ବର୍ଷେଖଣ୍ଡେ ଗଲା । ଆହୁରି ଧନ ବଢ଼ିଲା ଏବଂ ତା' ସାଥିରେ ନାଁଟା ବଢ଼ି ହେଲା, ବୀରବର ବାସୁଦେବ ଶ୍ରୀଚନ୍ଦନ ମର୍ଦ୍ଦରାଜ ମହାପାତ୍ର । ଏ ନାଁଟା ଯେ ଏକବାରେ କଳ୍ପିତ, ନୂତନ ତାହା ନୁହେଁ । ସେହି ବଂଶର ରାଜାମାନେ ଖୋର୍ଦ୍ଧାରେ ରାଜତ୍ୱ କଲାବେଳେ ବାସୁଦେବଙ୍କ ପୂର୍ବପୁରୁଷ ଏ ଉପାଧିରେ ଭୂଷିତ ହେଉଥିଲେ । ପ୍ରତିପତ୍ତି ନାଶ ଏବଂ ଦାରିଦ୍ର୍ୟ ଯୋଗୁଁ ଉପାଧିଗୁଡ଼ିକ ସ୍ମୃତିରେ ମାତ୍ର ଥିଲା ।

ବେଳ ପ୍ରାୟ ଘଡ଼ିଏ ହେବ । ଗାଁ ଦାଣ୍ଡର ଘାସ ଉପରୁ କାକର ଶୁଖିନାହିଁ । ଶୀତ କାଳ । ଲୋକେ ଶୀତ ଯୋଗୁଁ ଦାଣ୍ଡକୁ ବାହାରିନାହାନ୍ତି । ଶ୍ରୀ ବୀରବର ବାସୁଦେବ ଶ୍ରୀଚନ୍ଦନ ମର୍ଦ୍ଦରାଜ ମହାପାତ୍ରଙ୍କ କଚେରୀ ଘର ଦୁଆର ମୁହଁରେ ଯୋଡ଼ିଏ ପଠାଣ ପିଆଦା ବସିଛନ୍ତି । ଗୋଟିଏ ଗୋଟିଏ ହୋଇ, ଯୋଡ଼ିଏ ପୁଞ୍ଜିଏ ଲୋକ ଆସି ତାଙ୍କ ପାଖେ ଶୀତରେ ଥରି ଥରି ବସିଲେ ।

ପ୍ରାୟ ପହରେ ପାଞ୍ଚଘଡ଼ି ବେଳକୁ ବାସୁଦେବ ଘର ଭିତରୁ ବାହାରିଲେ—ପିନ୍ଧା ଖଣ୍ଡେ ଗାଆଁବୁଣା ଖଦି । ଦାନ୍ତଗୁଡ଼ିକ ପାନ ଖାଇ ଖାଇ ଯେତେ ମଇଳା ଦିଶିବାର କଥା ତହିଁରୁ ବେଶୀ ମଇଳା

ଦିଶୁଛି, ଦାନ୍ତ ଘଷା ନ ହୋଇଥିବା ହେତୁ । ଅଣ୍ଟାରେ ଦାନ୍ତକାଠି ଖଣ୍ଡେ ଖୋସା ହୋଇଛି । ଲେଡ଼ରେ ଲେଡ଼ଏ ଚୂନପଣ ଚକଟା ଚାଲିଛି । ବାସୁଦେବ ଚୂନପଣ ଚକଟି ଚକଟି ଆସି ଗୋଟାଏ ଆଲମାରୀକୁ ଆଉଜ ଖଣ୍ଡିଏ ମଶିଣା ଉପରେ ବସିପଡ଼ିବା ମାତ୍ରେ ଗୁମାସ୍ତା ଯୋଡ଼ାଏ ପୁଞ୍ଜାଏ, ବସ୍ତାନିଟାମାନ ଥୋଇଦେଇ ବେଢ଼ି-ଗଲେ ।

କଚେରୀ ଆରମ୍ଭ ହେଲା । ନଏ ଗୁମାସ୍ତା କହିଲେ, "ମହାଜନେ, ଏ ଜଗୁଆ ମା କଥାଟା ଟିକିଏ ବୁଝିଦେଲ । ମିଛରେ ସେ ବୁଢ଼ୀ ମାଇପିଟା କାହିଁକି ଫି ଦିନ ଦୁଆରେ ଆସି ଅଥିଆ ପଡ଼ୁଛି ?"

ବାସୁଦେବ ଟିକିଏ ପଠାଣ ପିଆଦା ଆଡ଼କୁ ଚାହିଁଲେ । ପଠାଣ ପିଆଦା ଡାକଦେଲା, "ଏ ବୁଢ଼ୀ, ଚାଲି ଆସି ମହାଜନ ପାଖରେ କଣ କହିବୁ କହୁନୋହୁଁ ? ଖାଲି ସିମିତି ବସିଛୁ କାହିଁକି ବେ ?"

ଜଗୁଆ ବାପ ମରିବାର ଚାରି ପାଞ୍ଚବର୍ଷ ଆଗରୁ ବାସୁଦେବଙ୍କ-ଠାରୁ ଟଙ୍କା କୋଡ଼ିଏଟି କରଜ କରିଥିଲା । ବର୍ଷକ ବାଦେ ମୂଳ-ଟଙ୍କାଟିକ ଆଉ ସୁଧ ବାବଦକୁ ଟଙ୍କା ପାଞ୍ଚୋଟି ଧରି ସେ ଆସିଲା ଟଙ୍କା ଶୁଝିବାକୁ, ମହାଜନେ ଟଙ୍କା ଶୁଝିବା କଥା ଶୁଣି ନିଆ ହୋଇ-ଗଲେ । "କିରେ, ଇମିତି ତୋର କେତେ ଟଙ୍କା ହୋଇଗଲା ଯେ ଆସିଛୁ ଶୁଝିବୁ ?" ଜଗୁଆ ବାପ ଫେରିଗଲା । ତା ପରବର୍ଷ ଠିକ୍ ସେଇ କଥା । ତୃତୀୟ ବର୍ଷ ବଚରା ପୁଣି ଆସିଲା । ମହାଜନେ କଅଁ-ଳେଇ ସଅଁଳେଇ କହିଲେ, "ଆରେ, ତୁ ଟଙ୍କା ଧରି ମୋ ପାଖକୁ ଶୁଝିବାକୁ ଆସିବାରୁ ମୋତେ କାନ୍ଦ ମାଡ଼ୁଛି । ତୋ' ଭାଇ ମରି ପଡ଼ିଥିଲା । ତତେ ଟଙ୍କା କୋଡ଼ିଏଟା ଦେଲି । କାହିଁକି ? ତୋ ଅଭାବ ଦେଖି ସମ୍ଭାଳିପାରିଲି ନାହିଁ ବୋଲି । ତୋ ଅଭାବ ତ ଇଲେ

ଘୁଞ୍ଚ ନାହିଁ । ପିଲାପୋଡ଼ଏ ଅଛନ୍ତି, ବାହା ହେବେ । ବାହା ତୋଳା କର । ଈଶ୍ୱର ତତେ ଟିକଏ ଗୁହାଁନ୍ତୁ । ଆସିବୁ ଠଙ୍କା ହିସାବ କରି ଦେଇଯିବୁ, ଯା ଇଟଲ ।"

ଜଗୁଆ ବାପ ବିଚରା ମହାଜନଙ୍କ କଥା ଶୁଣି କୃତଜ୍ଞତାରେ କାନ୍ଧ ପକେଇ କହିଲା, "ଆଜ୍ଞା, ଏ ଗାଁରେ ମୋତେ ଆଉ କେହି ଦେଖି-ପାରନ୍ତି ନାହିଁ । ସୁଧଗୁଡ଼ାକ ବଢ଼ିଯିବ ବୋଲି ସିନା ଆସୁଥିଲି ।"

ମହାଜନେ ମୁରୁକି ହସା ଦେଇ କହିଲେ, "ସୁଧଗୁଡ଼ାକ କ'ଣ ବଢ଼ିଯିବ ମ ? ସୁଧ କଣ ଗଛ ନା ଜନ୍ତୁ ଯେ ବଢ଼ିଯିବ ? ହଉ, ଯା, ଯା, !"

ମହାଜନଙ୍କ କଥା ଜଗୁଆ ବାପ ଯାଇ ଯେଉଁଠି କହିଲା, ସିଠେଇଁ ହେଲା ହସ ବୃଷ୍ଟି । ସମସ୍ତେ ତାକୁ ଥଟ୍ଟା କଲେ, "ଆରେ, ସୁଧ ଗଛ ନୁହେଁ କି ଜନ୍ତୁ ନୁହେଁ । ସୁଧ ହେଉଛି କୁମ୍ଭକର୍ଣ୍ଣ । ହିସାବ ବେଳେ ଯାହା ହାବୁଡ଼େ ପଡ଼ିବ ସବୁ ପେଟ ଭିତରକୁ ଗୁଳିଯିବ ।"

ଜଗୁଆ ବାପ କରେ କ'ଣ ? ପୁଣି ଧାଇଁଲା ମହାଜନ ଦୁଆରକୁ । ମହାଜନ ନାନାପ୍ରକାର କହିଲେ, ମାତ୍ର ସେ ଆଉ ଭୁଲିଲା ନାହିଁ । ମହାଜନେ ବି ହିସାବ କଥାର ଧରି ଛୁଆଁ ଦେଲେ ନାହିଁ । ଜଗୁଆ ବାପ ଗୋଡ଼ରୁ ପାଣି ମଲା । ବିଚରା ଖଟି ଖାଏ । ମହାଜନ ଦୁଆରକୁ ଧାଇଁବା ଫଳରେ ତା' ଘରେ ଅଧେ ଦିନ ଚୂଲି ଲାଗିଲା ନାହିଁ । ସ୍ତ୍ରୀର ଶୁଖିଲା ମୁହଁ, ପିଲଙ୍କ ଅନ୍ନ ଝୁଲ ଶୁଣି ତା ହୃଦ ଭାଜିଗଲା ବେଳକୁ ହେଲା ହିସାବ । ଜଗୁଆ ବାପ ଉପରେ ମହାଜନେ ଦୁଇଶହ ପଚିଶ ଠଙ୍କା ବାହାରଦେଲେ । ଜଗୁଆ ବାପାର ଭାଜିଲା ହୃଦ ଏ କଥାରେ ଭାଙ୍ଗିପଡ଼ିଲା । 'ଦୁଇଶହ ଠଙ୍କା କଏ ମୁଁ କଏ' ଏହି କଥା

କହି କହି ବଚରା ମାଇପକୁ କନ୍ଦେଇ, ପିଲାଙ୍କୁ ଭସେଇଦେଇ ଗୃଲିଗଲା ।

ଜଗୁଆ ବାପାର ଦୁଃଖର ଉତ୍ତରାଧିକାରୀ ହେଲା ଜଗୁଆ ମା ; ଜଗୁଆ ମା ଧାଇଁଲା । ମହାଜନେ ମକଦମା କରିବେ ବୋଲି ଡରେଇଲେ । ଜଗୁଆ ମା ମକଦମା ଫକଦମା ଜାଣେ କଣ ? ବାରୃଣ୍ଡା ଉପରେ ମହାଜନଙ୍କ ଗୋଡ଼ତଳେ ପଡ଼ି କହିଲା, "ତମେ ମୋ ପିଲାଟିମାନଙ୍କର ଧର୍ମବାପା । ଜମି ବାଡ଼ି କଣ ଦି'ଖଣ୍ଡ ଅଛି ନିଅ, ପିଲାଟିମାନଙ୍କୁ ଏ ଦୁଃଖରୁ ମୁକୁଳେଇ ଦିଅ ।"

ଜଗୁଆ ଆଉ ତା ସାନ ଭାଇଟି ନାଁରେ ଅସଲ ୩ ମାଣ ଶାରଦ ଜମି । ଯିମିତି ସିମିତି ହେଲେ ଟଙ୍କା ପାଞ୍ଚ ଶହରୁ କମ୍ ହେବ ନାହିଁ । ମହାଜନେ ଆଗ ଭାରି ନାହିଁ ନାହିଁ ହେଲେ ; ମାତ୍ର ଶେଷକୁ ପିଲାଟିମାନଙ୍କୁ ଦୟାକରି ସେତକ ନେଇ ଛାଡ଼ିଦେବେ ବୋଲି ଆଶା ଦେଲେ । ଜଗୁଆ ମା' ସବୁ ଗୋଳମାଳରୁ ରକ୍ଷା ପାଇଲା । ଏଥର ପିଲାଟିମାନଙ୍କ କପାଳେ ଯାହା ଥିବ । ମହା ଆନନ୍ଦରେ ବୁଢ଼ୀ ଦଲିଲ ଖଣ୍ଡେ ରେଜିଷ୍ଟ୍ରି କରେଇନେଇ ମହାଜନଙ୍କ ଦୁଆରେ ଯାଇ ଦେଇଆସିଲା ।

ଏଥର ଆଉରି ଏକ ଗୋଳମାଳ ଜୁଟିଲା । ସେ ସିନା କାଗଜ ଖଣ୍ଡ ଦେଲା । ମହାଜନ ଯେଉଁ ଦଲିଲ ନେଇ ଟଙ୍କା ଦେଇଥିଲେ, ସେ ଖଣ୍ଡ ତ ଫେରସ୍ତ ମିଳିବାର କଥା । ଫେରସ୍ତ ନ ନେଲେ ପିଲାଟିମାନଙ୍କ ଉପରକୁ କଣ୍ଟା ରହିବ ଯେ । ଜଗୁଆ ମା ସେଇଥି ପାଇଁ ଚ୍ଚାରି ମାସ ହେଲା ଧାଇଁଛି ।

ମହାଜନେ ସବୁଦିନ ତାକୁ ଦେଖନ୍ତି, ତା' କଥା ଶୁଣନ୍ତି ; ମାତ୍ର କିଛି ନ କହି ଗୃଲିଯା'ନ୍ତି । ଏତେଦିନ ପାଏଁ ସବୁଥର ଜଗୁଆ ମା' ଅାବୁଡ଼ା ପଡ଼ି ମହାଜନଙ୍କ ଆଗକୁ ଯାଉଥିଲା । ଆଜି ମହାଜନଙ୍କ

ଆଉ ତାକୁ ଡାକପଡ଼ିବାର ଦେଖି ଖୁବ୍ ଆଶା ଧରି ସେ ଲମ୍ବ ପଣନ୍ତ ପକେଇ ବୈଠକ ଘର କବାଟକଣରେ ଯାଇ ଠିଆ ହେଲା ।

ନଧି ଗୁମାସ୍ତା ପଗ୍ଭରିଲେ, "କିଲେ ବୁଢ଼ୀ, କଣ କହିବୁ, କହୁନାହୁଁ ? ଠିଆ ହେଲୁ କାହିଁକି ?"

ଜଗୁଆ ମା—"ସାଆନ୍ତେ, ଆଉ କହିବି କଣ ? ମୁଁ ତ ଯାହା ଥିଲା ସବୁ ଦେଲି, ମତେ କାଗଜ ଖଣ୍ଡି ପକେଇଦିଅ—ମୁଁ ଯାଏଁ । ମୋର କେତେ ଧନ୍ଦା, ତମର ଟିକିଏ ଦୟା ହେଉ ନାହିଁ—ହିନେ ନୁହେଁ କାଲେ ନୁହେଁ, ଗୁରି ଗ୍ଭରି ମାସ ହେଲା ତମରି ଦୁଆରେ ଆସି ଅଧିଆ ପଡ଼ିଛି । ମୋ' ଉପରେ ଟିକିଏ ଦୟା କରି ଭଲା ।"

ବାସୁଦେବ ଜଗୁଆ ମା ଆଡ଼କୁ କିଛି ନ ଜାଣିଲା ପରି ଗୁହିଁ ପଗ୍ଭରିଲେ, "ତୋର କି କାଗଜ ଲୋ ବୁଢ଼ୀ ?"

ଜଗୁଆ ମା—"ସେ ଯେଉଁ କାଗଜ ଖଣ୍ଡ ଦେଇ ତମଠାରୁ ଟଙ୍କା ନେଇଥିଲେ ସେଇ ଖଣ୍ଡିକ, ସାଆନ୍ତ !"

ନଧି ଗୁମାସ୍ତା—"ଆଲୋ ବୁଢ଼ୀ ! ତୁ ସେ କାଗଜ ଖଣ୍ଡ ମାଗୁଛୁ ସତ, ତେବେ, ମହାଜନଙ୍କର ପରା ମନ ବୋଧ ହେଲା ନାହିଁ । ମକଦମା କରିଥିଲେ ଆଉ ମିଳିଥାନ୍ତା । ଗୁଡ଼ିଦେଲେ ତଟେ, ଆଉ କିଛି ଦେ ସେ ଅଳଆ ନିଷ୍ପତ୍ତି ହୋଇଯାଉ ।"

ଜଗୁଆ ମା ଖୁବ୍ ସହିଥିଲା—ଭରି ବିନୟରେ ଆଗ କଥା କହୁଥିଲା ; ଆଜ ଆଉ ପୂର୍ବ ବିମୀତଭାବ ରଖିନପାରି କହିଲା, "ମନବୋଧ ହେଉନାହିଁ ? ମାଲେ ମୋର ! ଆଉ କଣ ଆମ ପ୍ରାଣଟି-ମାନ ନେଲେ ମନବୋଧ ହବ, କହିଲ ଭଲା । ମୋର ତିନିମାଣ ଜମି ନେଲ । ଗାଁରେ କହୁଛନ୍ତି ଆଉ କିଛି ହୋଇଥିଲେ କରଜ ଶୁଝି-ସାରି ଟଙ୍କା ବଳିଥାନ୍ତା—"

ବୁଡ଼ୀ କଥାରେ ମହାଜନଙ୍କର ରାଗ ହେଲା ନାହିଁ କି ଦୟା ହେଲା ନାହିଁ । ସେ କାଠପ୍ରତିମା ପରି ଅବିଚଳିତଭାବରେ କହିଲେ, "ଆଲୋ ବୁଢ଼ୀ, ଇମିତି ହେଲେ କଣ ହବ, କହିଲୁ ? ତୁ ଯଦି ଆଉ କେଉଁଠାରୁ ବେଶୀ ଟଙ୍କା ପାଇଥାନ୍ତୁ ତେବେ ସିଠେଇଁ ନ ଦେଇ ମତେ ଦେଲୁ କାହିଁକି ? ଓହୋ, ଏ ସଂସାରଟା ସତେ କଣ ହେ ? ତୁମେ ଯେତେ ଉପକାର କର କେହି ମାନିବେ ନାହିଁ ।"

ବୁଢ଼ୀ ମହାଜନଙ୍କ କଥାରେ ଦବିଗଲା । ମହାଜନଙ୍କ ସେ ଜମି ଉପରେ ନଜର ଅଛି ବୋଲି ଅନ୍ୟ କାହାରି ସେଠାରେ ବଳ ପାଇଲା ନାହିଁ । ଫଳରେ ମହାଜନଙ୍କ ହାତକୁ ସୁନା ଜମିତକ ଗଲା । ବୁଡ଼ୀ ବିନୀତଭାବରେ କହିଲା, "ସାଆନ୍ତେ, ସେ କଥାରେ ଆଉ କଣ ଅଛି ? ମତେ କମିତି ଉଦ୍ଧାର କରିଦିଅ ।"

ନିଧି ଗୁମାସ୍ତା ଜଗୁଆ ମା ଘରୁ ଗୋଟିଏ କାଳିଆ ଦାମୁଡ଼ି ବାହାରିବାର ଦେଖି ଘରି ଲେଭେଇଥିଲେ । ଅନେକ ଦିନୁ ମହାଜନେ ଦଶପାଞ୍ଚଟଙ୍କା ନେଇ କାଗଜ ଖଣ୍ଡ ଫୋପାଡ଼ିଦିଅନ୍ତେଣି । ନିଧି-ଗୁମାସ୍ତାଙ୍କ କାଳିଆ ଦାମୁଡ଼ି ଲୋଭରୁ ଏତେ ଦିନ ଯାଇଥିଲା । ବର୍ତ୍ତ-ମାନ ବୁଢ଼ୀର କାକୁତି ମିନତି ଦେଖି ନିଧିଗୁମାସ୍ତାଙ୍କ ହୃଦୟ ତରଳିଗଲା । ତାଙ୍କ ଆଖିକି ଲୁହ ଆସିଲାଭଳି । ଦୁଃଖ ଓ କରୁଣାର ଆବେଗରେ ତୋଟିଟାକୁ ଗାଉନ୍ଧା କରି ନିଧିଗୁମାସ୍ତା କହିଲେ, "ଆଲୋ ଜଗୁଆ ମା, ଦେ ଦେ, ଏ କଥାଟା ତୁଟେଇ ଦେ । ମହାଜନ ତାଙ୍କ ଉଚିତ ପାଉଣାଟା ପାଇଯାଇଥିଲେ ଏତେଦିନକୁ ସବୁ କଥା ଶୋଧ କରିଦେଇଥାନ୍ତେଣି । ତୋ କଥା ମୁଁ ତାଙ୍କୁ ସବୁଦିନେ କହେ ; ସେ କିଛି ଟାଣ ଧରିବସିବେ ନାହିଁ ଯେ । ଆଚ୍ଛା, ତୋର ଯୁ' କାଳିଆ ଦାମୁଡ଼ିଟା ଅଛି ସେଇଟା ମହାଜନଙ୍କୁ ଦେ କି' ମୁଁ ଆଜି ତୋ କାଗଜ ଖଣ୍ଡ ବାହାରିକରି ଦେବି ।"

କାଳିଆଦାମୁଡ଼ିଟି କଥା ଶୁଣି ଜଗୁଆ ମା ମୁଣ୍ଡରେ ହାତ ମାରି ଧପ୍‌କିନା ବସି ପଡ଼ିଲା । ତା ଆଖି ଛଳ ଛଳ ହୋଇଗଲା । ବୁଢ଼ୀର ସାନପୁଅ ନଧିଆ ମା ସାଙ୍ଗରେ ଆସିଥିଲା । ସେ ପ୍ରାୟ ସବୁଦିନ ମା ସାଙ୍ଗରେ ଆସେ । କିନ୍ତୁ କଚେରୀଘରେ ନ ରହି, ବାହାର ପିଣ୍ଡାରେ ବୁଲି ଖେଳୁଥାଏ । ଆଜି ସେ ଦାଣ୍ଡରୁ ବୁଲି ଘର ଭିତରକୁ ଆସିଲା ବେଳକୁ ନିଧିଗୁମାସ୍ତା କାଳିଆ ଦାମୁଡ଼ି କଥା କହୁଛନ୍ତି । ତାପରେ ମା ଧପ୍‌କିନା ମୁଣ୍ଡରେ ହାତ ଦେଇ ବସିପଡ଼ିବାର ଦେଖି ନଧିଆ ବୁଝିନେଲା, କାଳିଆ ଦାମୁଡ଼ି ଉପରେ ଗୋଟାଏ କିଛି ବିପତ୍ତି ପଡ଼ୁଛି । ସେ ମା ବେକ ଧରିପକେଇ ନିଧିଗୁମାସ୍ତାଙ୍କୁ ଦେଖେଇ ପଚାରିଲା, "ବୋଉ, ସେ କଣ କହୁଛି କିଲେ ?"

ଜଗୁଆ ମା—ଆରେ ପୁଅ, ସେ କହୁଛନ୍ତି ଆମ ବୁଢ଼ିଆକୁ ନେବେ, ନଅନ୍ତୁ । ବୁଢ଼ିଆ ବଡ଼ ହେଇଗଲାଣି । ଆମେ ଆଉ ଗୋଟିଏ ଛୋଟିଆ ବାଛୁରୀ କିଣିବା ।

ନଧିଆ ଅଣ୍ଟାକୁ ଭିଡ଼ିଦେଇ ତା ଛୋଟ ହାତ ଦୁଇଟିରେ ମାଡ଼ ଉଞ୍ଚେଇ କହିଲା, "ନା, ଆମେ ବୁଢ଼ିଆକୁ ଦବୁ ନାହିଁ ।" ଏତିକି କହିଦେଇ ସାରି ତା ଧୈର୍ଯ୍ୟଚ୍ୟୁତ ହୋଇଗଲା—ବୋଧହୁଏ ମହାଜନ ଆଉ ନିଧି ଗୁମାସ୍ତାଙ୍କ ବିକୃତ ଅଟ୍ଟହାସ୍ୟ ଦେଖି । ସେ ମା'କୁ କୁଣ୍ଢେଇ ପକେଇ କାନ୍ଦି କାନ୍ଦି ଅଡ଼ି ବସିଲା, "ବୋ—ଉ, ତାକୁ ନାହିଁ କରି ଆମେ ବୁଢ଼ିଆକୁ ଦେବା ନାହିଁ ।"

ଜଗୁଆ ମା "ନାହିଁ ମ ଦବା ନାହିଁ" ବୋଲି କହି ନଧିଆକୁ ବୋଧ କରୁଛି ନିଧିଗୁମାସ୍ତା କହିଲେ, "ଏ ବୁଢ଼ୀ, ଏଇଟା କଣ ତୋ ଘର କିଲେ, ପିଲା ଗେଲ କରୁଛୁ ? ଦାମୁଡ଼ିଟା ଯେବେ ଦବୁ କହ, ମୁଁ କାଗଜ ସାଙ୍ଗରେ ନେଇ ଯିବି । ଖୁଣ୍ଟରୁ ଦାମୁଡ଼ି ଫିଟେଇଦେଲେ କାଗଜ ପାଇବୁ ।"

ଜଗୁଆ ମା କାନ୍ଦ କାନ୍ଦ ହୋଇ କହୁଥାଏ, "ସାଆନ୍ତ, ଟିକଏ ରହ ମ, ପିଲାଟା ବୋଧ ହେଇଯାଉ କ, ବୁଝେଇ କରି ଦାମୁଡ଼ିଟା ଦେବ ପଛେ ।"

ପିଲା କାନ୍ଦୁଥାଏ, ମହାଜନ ପିଲାର ଅନର୍ଥକ କାନ୍ଦରେ ଅଶାନ୍ତ ବିରକ୍ତି ପ୍ରକାଶ କରୁଥାନ୍ତି, ଗୁମାସ୍ତାମାନେ କଚେରୀଘରେ ପିଲା କାନ୍ଦିବାର ଏ ଅପୂର୍ବ ଦୃଶ୍ୟଟା ଦେଖି ମଜା ଅନୁଭବ କରୁଥାନ୍ତି, ଏପରି ସମୟରେ ଜଣେ ସହରିଆ ବାବୁ ଯୋତାଗୋଡ଼ରେ ପଶି କଚେରୀ ଘରର ପବିତ୍ରତା ନଷ୍ଟ କରିଦେଲେ ।

ଆଗନ୍ତୁକ ପଚାରିଲେ, "ବାସୁଦେବ ହରିଚନ୍ଦନ କିଏ ? ଆପଣ ?"

ବାସୁଦେବ "ଏ —ଏଁ, ଆଜ୍ଞା, ହଁ, ମୋ ନାମ ବାସୁ" ବୋଲି କହି ଧଡ଼ପଡ଼ ହୋଇ ଉଠିପଡ଼ି ଅଣ୍ଟାରୁ ଦାନ୍ତକାଠି ଖଣ୍ଡି ଅଜାଣତରେ ଫୋପାଡ଼ିଦେଲେ ।

ଆଗନ୍ତୁକ ବସିବା ପାଇଁ ଘର ଭିତର ସବୁଆଡ଼େ ଆଖି ବୁଲେଇ ବୁଲେଇ କହିଲେ, "ମୁଁ ଆପଣଙ୍କ ପାଖକୁ ଗୋଟାଏ ଜିନିଷ ମାଗିବାକୁ ଆସିଛି ।"

ଏ କଥାର କି ଚମତ୍କାର ଶକ୍ତି ! ବାସୁଦେବ ପୁଣି ପୂର୍ବ ଭାବ-ଭଙ୍ଗୀ ଫେରାଇ ଆଣି, ବସିପଡ଼ି, ଆଗନ୍ତୁକଙ୍କ ପ୍ରଶ୍ନର କିଛି ଉତ୍ତର ଦେଲେ ନାହିଁ ।

ଆଗନ୍ତୁକ ବସିବାକୁ କୌଣସି ଜାଗା ନ ପାଇ, କିମ୍ବା ବସିବାକୁ ଗୃହସ୍ୱାମୀଙ୍କ ପାଖରୁ ନିମନ୍ତ୍ରଣ ନ ପାଇ ଠିଆହେଇ କହିଲେ—

"ମୁଁ ଶୁଣୁଛି, ଖୋର୍ଦ୍ଧାଠାରୁ ପ୍ରାୟ ସାତ ଆଠ ମାଇଲ ଦୂରରେ ଆପଣଙ୍କର ଚଞ୍ଜାମ ସଡ଼କ ପାଖ ଜଙ୍ଗଲ ଭିତରେ ଖଣ୍ଡେ

ଜାଗା ଅଛି । ସେଖଣ୍ଡ ମୋର ବିଶେଷ ଦରକାର । ଆପଣ ମୋତେ ସେଖଣ୍ଡ ପଚଶବର୍ଷ ପାଇଁ ପଟ୍ଟା ଦେଲେ ବଡ଼ ଉପକୃତ ହୁଅନ୍ତି ।”

ଗୁମାସ୍ତାଙ୍କ ସଙ୍ଗେ ଅନେକ କଥାବାର୍ତ୍ତା ପରେ ଜାଗାଟା ସ୍ଥିର ହେଲା । ସେ ଖଣ୍ଡ ଗୋଟିଏ ଶଅରର ବଂଶ ମାଣ ମହାଜନେ ପାଇ-ଥିଲେ । ଦଶବର୍ଷ ହେଲା ସେଖଣ୍ଡ ହାତକୁ ଆସିଥିଲେ ସୁଦ୍ଧା, ପାହାଡ଼ିଆ ଜାଗା ହୋଇଥିବା ହେତୁ ଏବଂ ନିକଟରେ ବାଘ ଥିବାରୁ, ମହାଜନେ ସେଥିରୁ କୌଣସିମତେ ଖଜଣାଟା ଆଦାୟ କରିବାର ଉପାୟ ପାଉନଥିଲେ ! ବର୍ତ୍ତମାନ ଆଗନ୍ତୁକଙ୍କ ମୁହଁରୁ ବିଶେଷ ଦରକାର ଶବ୍ଦଟା ଶୁଣି ସେ ଲଭର ଗୋଟାଏ ଜ୍ୱଳନ୍ତ ଚିତ୍ର ଆଖି ଆଗରେ ସାଙ୍ଗେ ସାଙ୍ଗେ ଆଙ୍କିଦେଇ କହିଲେ —

“ଏଁ — ଆପଣ ସେଖଣ୍ଡ ନେବେ ବୋଲି କହୁଚନ୍ତି ସତ, ତେବେ ଆଉ ଜଣେ ତ ସେ ବିଷୟରେ କଥାବାର୍ତ୍ତା କରିସାରିଲେଣି, କଣ କରିବା ?”

ଆଗନ୍ତୁକ — ତେବେ ଆଉ କଣ ହବ ? ମୁଁ ଶୁଣିଥିଲି ସେଖଣ୍ଡ ଖୁବ୍ ନିଘୁଞ୍ଚିଆ ଜାଗା, ଆଜି ପର୍ଯ୍ୟନ୍ତ କୌଣସି ଲେକ ତାକୁ ପଟ୍ଟା ନେଇନାହାନ୍ତି ।

ମହାଜନ — ଯେ ନେବେ ବୋଲି ଆସିଥିଲେ ତାଙ୍କ ସାଙ୍ଗେ ଅବଶ୍ୟ ଜବାବ୍ କିଛି ହୋଇନାହିଁ, ଆପଣଙ୍କର ଯଦି ବିଶେଷ ଦରକାର ଆପଣ କଥାବାର୍ତ୍ତା କରନ୍ତୁ ।

ଆଗନ୍ତୁକ — ଯଦି ଅନ୍ୟ କାହା ସଙ୍ଗେ ପକା ଜବାବ୍ ନ ହୋଇଛି, ସେ ଭଗ୍ୟର ବିଷୟ । ଆଚ୍ଛା, ଆପଣ ବାର୍ଷିକ କେତେ ଖଜଣା ନେବେ ? ସେଗୁଡ଼ାକ ଜଙ୍ଗଲ ତ !

ମହାଜନ—ଜଙ୍ଗଲ ଜାଗା ହେଲେ କଣ ହେଲା । ସିମିତି ଖଣ୍ଡେ ଜାଗା ଏଠାରୁ ଦଶ କୋଶରେ ମିଳିବ ନାହିଁ । ଏକରକୁ ତିନି ଟଙ୍କା ଲେଖାଏଁ ନ ହେଲେ ଚଳିବ ନାହିଁ—ସେ ଦଶ ଏକର ଅଛି ।

ଆଗନ୍ତୁକ କିଛି ନ କହି ପାକେଟିରୁ ଟଙ୍କା ମୁଣିଟି ବାହାର କରି, ୬୦ ଟଙ୍କାର ନୋଟ୍ ପକେଇଦେଇ କହିଲେ, "ଏ ହେଲା ଦୁଇ ବର୍ଷର ଖଜଣା । କାଲି ରେଜିଷ୍ଟ୍ରି କରିଦେବାକୁ ହେବ ।"

କଥା ତୁଟିଗଲା । ଆଗନ୍ତୁକ ସନ୍ତୋଷରେ ଫେରିଯାଉଥିଲେ—ଆଖି ପଡ଼ିଗଲା ଜଗୁଆ ମା ଆଉ ତା' ପୁଅ ନିଧିଆ ଉପରେ । ସେମାନଙ୍କ ଶୁଖିଲା ମୁହଁଟିମାନ ଦେଖି ସେ ଅଟକିଗଲେ ଏବଂ ଫେରି ନିଧିଆକୁ ପଚାରିଲେ, "କିରେ, ତମର ଇଠେଇ କଣ କାମ ?" ନିଧିଆ ସମସ୍ତ ସଂକୋଚ ପାସୋରି ଦେଇ ଉତ୍ତର ଦେଲା, "ସେ ଆମ ଗୁନ୍ଦିଆକୁ ନେଇଯିବେ । ତମେ ତାଙ୍କୁ ଟିକିଏ ମନା କରିବ ଟି !" ଆଗନ୍ତୁକ ଗୁନ୍ଦିଆ କିଏ ବୁଝିବେ କୁଆଡ଼ୁ ? ସେ ପୁଣି କହିଲେ, "କିରେ, ଗୁନ୍ଦିଆ କିଏ ?"

ନିଧିଆ ଆଗନ୍ତୁକଙ୍କ ମୂର୍ଖତାରେ ଟିକିଏ ରାଗ କରି ଉତ୍ତର ଦେଲା, "ଗୁନ୍ଦିଆ ପରା ଆମ ଦାମୁଡ଼ି । ସେ ଯେଉଁ କାଳିଆ ଦାମୁଡ଼ିଟା ମ, ଦେଖିନାହଁ ?"

ଆଗନ୍ତୁକ ପୁଣି ମହାଜନଙ୍କ ପାଖକୁ ଗଲେ । ଆଗନ୍ତୁକ କାଳିଆ ଦାମୁଡ଼ି କଥାରେ ଗୋଡ଼ ଭର୍ତ୍ତି କରିବାର ଦେଖି ନିଧି ଗୁମାସ୍ତା ମନେ ମନେ ଭାରି ବିରକ୍ତ ହୋଇ ପଚାରିଲେ, "ଆପଣ ପୁଣି କାହିଁକି ଫେରିଲେ ?"

ଆଗନ୍ତୁକ ନିଧି ଗୁମାସ୍ତାଙ୍କୁ କିଛି ଉତ୍ତର ନ ଦେଇ ମହାଜନଙ୍କୁ କହିଲେ, "ଆଜ୍ଞା, ଆପଣଙ୍କର ଏ ପିଲା ଏବଂ ତା'ର ମା ଠାରୁ ଯଦି କିଛି ପାଇବାର ଥାଏ, କହିଲେ ମୁଁ ଦେଇଦେବି ।"

ମହାଜନେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ସେ ଆପଣଙ୍କର କିଏ ?"

ଆଗନ୍ତୁକ—କେହି ନୁହେଁ । ତେବେ ମୁଁ ଯଦି ପାରେ, ସେମାନଙ୍କର ଦୁଃଖ ଦୂର କରିଦିଅନ୍ତି ।

ଏ କିଏ ? ଅପରିଚିତ ଲୋକ—ଦେଖା ନାହିଁ, ଶୁଣା ନାହିଁ—ଖିଆଲରେ ଟଙ୍କା ଦେଇ ଅନ୍ୟର ଦୁଃଖ ମୋଚନ କରିବା, ବାସୁଦେବଙ୍କୁ ଭାରି ଅଦ୍ଭୁତ ଜଣାଗଲା । ଆଗନ୍ତୁକ ବିନା ବାକ୍ୟ ବ୍ୟୟରେ ଖଣ୍ଡେ ଜଙ୍ଗଲ ପାଇଁ ଆଗତୁରା ଦୁଇ ବର୍ଷର ଭଡ଼ା ଫୋପାଡ଼ିଦେଇଥିବାର ସେ ଦେଖି ଲୋକଟା ଖାମଖିଆଲି, ଉଡ଼ା ପ୍ରକୃତିର ଲୋକ ବୋଲି ବୁଝିଥିଲେ । ସେ ଦେଖିଲେ, ଯୁବାଙ୍କ ସଙ୍ଗେ କଥାବାର୍ତ୍ତା କଲେ ଲାଭ ଅଛି । ନିଧି ଗୁମାସ୍ତାଙ୍କୁ ଆଶା ଦେଇଥିବା କାଳିଆ ଦାମୁଡ଼ି ବିଷୟ ଭୁଲି ସେ ଟିକିଏ ହସି କହିଲେ, ସେ ତ ଆପଣଙ୍କର କେହି ନୁହେଁ ଆପଣ ତା ପାଇଁ କିଣ ଏତେଗୁଡ଼ାଏ ଟଙ୍କା ଖର୍ଚ୍ଚ କରିପାରିବେ ?"

ଆଗନ୍ତୁକ—ଦେଖାଯାଉ, ଆପଣ ହିସାବ କରନ୍ତୁ ।

ମହାଜନ—ହିସାବ ସରିଚି, ତାକୁ ଦୟାକରି ମୁଁ ଅନେକ ଟଙ୍କା ଛାଡ଼ିଦେଇଛି, ଆଉ ଟଙ୍କା କୋଡ଼ିଏ ଦେଲେ ତା ଦସ୍ତାବିଜ ସେ ଓ୍ୟାପସ ପାଇବ ।

ଆଗନ୍ତୁକ କିଛି ନ କହି ପୁଣି ଟଙ୍କାମୁଣି ଫିଟେଇ ଦଶଟଙ୍କିଆ ନୋଟ ଦି'ଖଣ୍ଡ ଫୋପାଡ଼ିଦେଲେ । ମହାଜନେ ନୋଟ ପ୍ରାପ୍ତିରେ ଟିକିଏ ଆତ୍ମପ୍ରସାଦ ଅନୁଭବ କରି ନିଧି ଗୁମାସ୍ତାଙ୍କୁ ହୁକୁମ ଦେଲେ, ଦସ୍ତାବିଜ ଖଣ୍ଡି ବାହାର କରିଦେବାକୁ । ନିଧି ଗୁମାସ୍ତା ବେଳ ବେଶୀ ହୋଇଯାଇଥିବାରୁ ଅନ୍ୟଦିନ ଦେବାକୁ କହି, ଦସ୍ତାବିଜ କାଗଜପତ୍ର ଭିତରେ ରହିଯାଇଥିବାରୁ ପାଇବାରେ ତାଙ୍କର

ଅସାମର୍ଥ୍ୟ ଜ୍ଞାପନ କରି, କୌଣସିମତେ ସେଖଣ୍ଡ ମାଡ଼ି ବସିବାର ଉପାୟ କଲେ । ମାତ୍ର ଆଗନ୍ତୁକ ଜିଦ୍ ଧରିଲେ, ମହାଜନ ସେଠିକ-ବେଳର କାମ ସେତେବେଳେ କରିଦେବାର ଉପକାରିତା ବିଷୟରେ ଗୋଟିଏ ନାତିଦୀର୍ଘ ବକ୍ତୃତା ଦେବା ପରେ, ବହୁ କଷ୍ଟରେ ଯତ୍ନରେ ଥୂଆ ହୋଇଥିବା ଖଣ୍ଡିଏ ବସ୍ତାନି ଭିତରୁ କାଗଜ ଖଣ୍ଡି ବାହାରି, ମଝିରୁ ଚିରିହୋଇ ଆଗନ୍ତୁକ ଭଦ୍ରଲୋକଙ୍କ ହାତରେ ପଡ଼ିଲା । ଆଗନ୍ତୁକ କାଗଜଖଣ୍ଡି, କୃତଜ୍ଞତାର ଆଧିକ୍ୟରେ କାନ୍ଦ କାନ୍ଦ ହୋଇଯାଇଥିବା ଜଗୁଆମାର ହାତରେ ଦେଇ ମହାଜନଙ୍କ ଘରୁ ବାହାରିଲେ ।

## ପାଞ୍ଚ

ଆଗନ୍ତୁକ ଭଦ୍ରଲୋକଟି ଅନ୍ୟ କେହି ନୁହନ୍ତି, ଆମ୍ଭମାନଙ୍କ ପୂର୍ବ ପରିଚିତ ଗୋପାଳ । କନକଙ୍କ ଘରୁ ବାହାରିକୁ ଫେରି ଆସି ଘୋର ଶୂନ୍ୟତାରେ ତାଙ୍କ ହୃଦୟ ପୂରିଗଲା । ଫାଟକ ବାହାରେ ଠିଆହୋଇ ସେ ତାଙ୍କ ପ୍ରିୟତମାର ବାସସ୍ଥାନକୁ ଟିକିଏ ଫେରି ଚାହିଁଲେ । ଘଣ୍ଟେ ଖଣ୍ଡେ ପୂର୍ବରୁ ଏ ସ୍ଥାନଟା ତାଙ୍କର ଥିଲା ସ୍ୱର୍ଗ । ଆଜି ଅବଶ୍ୟ ସେ ତାଙ୍କର ସେହି ସ୍ୱର୍ଗ । ତେବେ ଏ ସ୍ୱର୍ଗରେ ବିଚରଣ କରିବାର ଅଧିକାର ଆଉ ତାଙ୍କର ନାହିଁ । ସେ ବିତାଡ଼ିତ, ଶାପଗ୍ରସ୍ତ ।

କନକ କେତେ ନିର୍ଦ୍ଦୟ । କନକର ଚିନ୍ତାରେ ସେ ଦିନରାତି ଭୁଲିଥିଲେ, ସୁଖ ଦୁଃଖ ପାସୋରିଥିଲେ । କନକ ଚିନ୍ତାରେ ତାଙ୍କ କ୍ଷୁଧା ନିବାରିତ ହେଉଥିଲା । ତାଙ୍କ ନିମନ୍ତେ ସେ ତ୍ୟାଗ ନ କରି-ଥାନ୍ତେ କଣ ? କନକ ତାଙ୍କ ଜାତିର ନୁହେ ; ତାଙ୍କ ସମାଜର ନୁହେ । କନକ ବ୍ରାହ୍ମଣ, ସେ ହିନ୍ଦୁ; କୁଳୀନ କରଣ । ମାତ୍ର ଏସବୁ

ତାଙ୍କର ଅନ୍ତରାୟ ହୋଇ ନଥାନ୍ତା । କନକ 'ହିଁ' କରିଥିଲେ ସେ ଏସବୁକୁ ଭ୍ରୂକ୍ଷେପ ନ କରି ତାର ପ୍ରେମକୁ ବୋଇତ କରି ସଂସାର-ସାଗରର ସମସ୍ତ ଝଡ଼ ତୋଫାନର ସମ୍ମୁଖୀନ ହୋଇଥାନ୍ତେ ।

ସେ ତାକୁ ଏତେ ଭଲ ପାନ୍ତି ! କିନ୍ତୁ ତା ମନରେ ଟିକିଏ ହେଲେ ଦୟା ହେଲା ନାହିଁ । ତାଙ୍କ ହୃଦୟର ବେଦନା ତା ହୃଦୟର କୌଣସି ତନ୍ତ୍ରୀକୁ ଆଘାତ କଲା ନାହିଁ ।

ଗୋପାଳଙ୍କ ମନ ଘୋର ବିତୃଷ୍ଣାରେ ପୂରିଗଲା । ସେ ଆଗରୁ କୌଣସି ଯୁବତୀକୁ ପ୍ରେମଚକ୍ଷୁରେ ଦେଖିନଥିଲେ । ତାଙ୍କ ପ୍ରେମର ସାମଗ୍ରୀ ଇତି ପୂର୍ବେ ଥିଲା, ପୁସ୍ତକ ଏବଂ ତହିଁରେ ଲିଖିତ ଭାବସମୂହ । ସେ ବିଚାରିଥିଲେ, ଏହି ପୁସ୍ତକମାନ ଏବଂ ସେମାନଙ୍କର ଭାବକୁ ନେଇ ସେ ଜୀବନ କଟାଇଦେବେ । କୌଣସି ଯୁବତୀ ତାଙ୍କ ହୃଦୟକୁ ଏଥିରୁ ଟାଣି ନେଇପାରିବ ବୋଲି ସେ ଏଥିପୂର୍ବେ ଭାବି ସୁଦ୍ଧା ପାରି ନଥିଲେ । ଯାହାହେଉ କନକ ହୃଦୟ କିଣିନେଲା—କିନ୍ତୁ ଦେଲାନାହିଁ ତା' ମୂଲ୍ୟଟା । ଗୋପାଳ ଗୋଟାଏ ଦୃଷ୍ଟାନ୍ତରୁ ତଥ୍ୟ କରି ଧଇଲେ ଯେ ସ୍ତ୍ରୀ ଜାତିଟା ଏହିପରି । ତମ ଭଣ୍ଡାର ଜୁରି କରିବେ ମାତ୍ର ତାଙ୍କରି ଯୋଗୁଁ ଭିକାରୀ ହୋଇ ତୁମେ ଯେତେବେଳେ ତାଙ୍କ ଆଡ଼କୁ ଭିକ୍ଷା ପାତ୍ର ବଢ଼ାଇଦେବ, ସେତେବେଳେ ଭିକ୍ଷାର ଫଳରେ ମିଳିବ ନିଷ୍ଠୁର ଅବଜ୍ଞା, ନିର୍ମମ ଉପେକ୍ଷା ।

ମନେପଡ଼ିଗଲା ମଦନବାବୁଙ୍କର ବିଦାୟ ବାଣୀ । ମାତ୍ର ମଦନବାବୁ ତାଙ୍କୁ ଯେଉଁ ସବୁ ବିଶେଷଣରେ ଭୂଷିତ କରି ବିଦାୟ ଦେଇଥିଲେ, ସେଥି ନିମନ୍ତେ ମଦନବାବୁଙ୍କ ଉପରେ ଲେଶମାତ୍ର ରାଗ ନ ହୋଇ ଅଭିମାନ ହେଲା କନକ ଉପରେ । କନକ ବୋଧହୁଏ ତାଙ୍କୁ ମଫସଲିଆ ବୋଲି ତ୍ୟାଗ କରିଛି । କନକ ବୋଧହୁଏ ତାଙ୍କ ସମ୍ପତ୍ତି ପାନବାଲଙ୍କ ସମ୍ପତ୍ତିଠାରୁ କମ୍ ବୋଲି ତାଙ୍କ ପ୍ରତି ଅବଜ୍ଞା

ଦେଖାଇଲା । ବୋଧହୁଏ ତାଙ୍କର ଏ ସଂସାରରେ ନିଜର କେହି ନାହାନ୍ତି ବୋଲି କନକ ମଧ୍ୟ ତାଙ୍କର ନିଜର ହେବାକୁ ମଙ୍ଗିଲା ନାହିଁ ।

ଉପେକ୍ଷାର ତାପ ଗୋପାଳ ସହିପାରିଲେ ନାହିଁ । ଅଭି-ମାନରେ ତାଙ୍କ ଆଖି ଛଳ ଛଳ ହୋଇଗଲା । ସେ ଛଳ ଛଳ ଆଖିରେ କନକଙ୍କ ଗୃହକୁ ଶେଷ ବାର ଥରେ ଦେଖିନେଇ ପ୍ରତିଜ୍ଞା କଲେ, ଆଉ କନକ ନିକଟରେ ରହିବେ ନାହିଁ । ଏପରି କି କୌଣସି ରମଣୀର ମୁଖାବଲୋକନ କରିବେ ନାହିଁ । ସେ ସଂସାରର କୋଳା-ହଳ ତ୍ୟାଗ କରି, ମନୁଷ୍ୟର ନିର୍ମମତାର ବହୁ ଦୂରରେ, ନିର୍ଜନ ଅରଣ୍ୟ ଭିତରେ, ପଶୁପକ୍ଷୀଙ୍କ ମଧ୍ୟରେ ପୁଣି ତାଙ୍କ ପୂର୍ବ ପରିତ୍ୟକ୍ତ ପୁସ୍ତକ ପ୍ରେମରେ ମଜ୍ଜିବାକୁ ଚେଷ୍ଟା କରିବେ । ରମଣୀର ନିଷ୍ଠୁରତା ଯେତେ କଷ୍ଟ ଦେବ ଦେଉ, ସମଗ୍ର ଜଗତର କନ୍ୟାପିତାମାନଙ୍କର ଅଭଦ୍ର ବାକ୍ୟ-କଷାଘାତ ଉପେକ୍ଷିତ ଯୁବକ ହୃଦୟରେ ଯେତେ ଆଘାତ ଦେବ ଦେଉ—ସେ ସବୁ ଗୋପାଳଙ୍କର ଆଉ କଣିକାମାତ୍ର କ୍ଷତି ବୃଦ୍ଧି କରିପାରିବ ନାହିଁ । ସେ ପୁଣି ଆଲିଙ୍ଗନ କରିନେବେ ତାଙ୍କ ପୁସ୍ତକଗୁଡ଼ିକୁ । ପୁସ୍ତକର ପ୍ରେମରେ ତ ଆଉ ବିରାମ ନାହିଁ—ଉପେକ୍ଷା ନାହିଁ— ଶ୍ରାନ୍ତି ନାହିଁ ।

ଗୋପାଳ ସେହିଦିନ କଟକ ଛାଡ଼ି, ଭବିଷ୍ୟତ୍ ଉପରେ ଜଉମୁଦ ବସେଇଦେଇ ଚାଲିଗଲେ ନିଜ ଗ୍ରାମକୁ । ଘର ବାଡ଼ି ଗୁଣ୍ଡିକଠଉଁ ସବୁତକ ଜମି ବିକ୍ରୀ କରିଦେବାକୁ ଖୁବ୍ ଅଳ୍ପ ସମୟ ଲାଗିଲା । ପୈତୃକ ସମ୍ପତ୍ତିକୁ ନୋଟ ଆକାରରେ ପାକିଟ ଭିତରେ ରଖି ସେ ରହିଲେ ଗୋଟିଏ ଉପଯୁକ୍ତ ସ୍ଥାନର ଅନୁସନ୍ଧାନରେ । ଶେଷକୁ ବାସୁଦେବଙ୍କ ଖୋର୍ଦ୍ଧା ଜଙ୍ଗଲରେ ଥିବା ଜାଗା ଖଣ୍ଡିକର ଖବର ମିଳିଲା । ଏ ଖବର ସାଙ୍ଗେ ବି ଖବର ମିଳିଲା ଯେ, ବାସୁଦେବ ଯକ୍ଷ । ଗୋପାଳଙ୍କର ନିର୍ଜନ ଜାଗାଖଣ୍ଡି କପରି ନିତାନ୍ତ

ଆବଶ୍ୟକ ବୁଝିପାରିଲେ ସେ ଗୋପାଳଙ୍କୁ ନିଃସ୍ୱ କରିଦେବେ। କିନ୍ତୁ କାହିଁ ? ବାସୁଦେବ ତ ଖୁବ୍ ଅଳ୍ପରେ ତାଙ୍କୁ ତାଙ୍କ ଈପ୍‌ସିତ ଭୂସ୍ୱର୍ଗ ଖଣ୍ଡ ଛାଡ଼ିଦେଲେ।

ଗୋପାଳ ବାସୁଦେବଙ୍କ କଚେରି ଘରୁ, ବଦାନ୍ୟତା ନିମନ୍ତେ ବାସୁଦେବଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଇ ଫେରୁଛନ୍ତି, ନିଧିଆ ପଛଆଡ଼ୁ ଯାଇ ତାଙ୍କ କାମିଜକୁ ଧରିପକେଇ କହିଲା, "ଏ ବାବୁ, ତୁ ଆ, ଆମ ବୁଢ଼ିଆକୁ ଦେଖିବୁ। ଆମ ବୁଢ଼ିଆ ଭରି ସୁଧାର ଦାମୁଡ଼ି। ଟିକିଏ ମୁଣ୍ଡ ହଲେଇ ଦେବ ନାହିଁ କି ହୁଙ୍କାରିବ ନାହିଁ। ଆ, ଦେଖିବୁ।"

ଗୋପାଳ ବୁଝିଲେ, ବାଳକ ବାସୁଦେବଙ୍କ କବଳରୁ ତା' ପ୍ରିୟ ଦାମୁଡ଼ିଟି ରକ୍ଷା ପାଇବା ହେତୁ କୃତଜ୍ଞତାରେ ନିମନ୍ତ୍ରଣ କରୁଛି। ସେ ଦ୍ୱିପ୍ରହରଟା କେଉଁଠାରେ କଟାଇବେ କିଛି ସ୍ଥିର କରିନଥିଲେ। ତେଣୁ ସରଳ ବାଳକଟିର ଆହ୍ୱାନ ଏଡ଼ି ନଦେଇ ସେ ତା ସଙ୍ଗେ ସଙ୍ଗେ ଚାଲିଲେ।

ଜଗୁଆ ମା ତଥା ନିଧିଆ ମା ଗୋପାଳ ନିଧିଆ ସାଙ୍ଗରେ ବାହାରିବାର ଦେଖି ମହାଶଶବ୍ୟସ୍ତରେ ଗୋପାଳଙ୍କ ଆଗମନ ନିମନ୍ତେ ଘରଟି ସଜାଡ଼ିବା ପାଇଁ ବାଟ ଭାଙ୍ଗି ଆଗରେ ଚାଲିଗଲା। ନିଧିଆ ଗୋପାଳଙ୍କୁ ସାଙ୍ଗରେ ନେଇ ଗଲା। କାଳିଆ ଦାମୁଡ଼ି ହରାଇବାର ଆଶଙ୍କାଟା ମୁଣ୍ଡରୁ ଚାଲିଯାଇଥିବା ହେତୁ ନିଧିଆର ଫୁର୍ତ୍ତି। ବାଟରେ ଗୋଟିଏ ପଡ଼ିଆ ପଡ଼ିଲା। ପଡ଼ିଆରେ ଗୋଟିଏ ମାତ୍ର ପ୍ରୌଢ଼ୀ କଇଁଆ ଗଛ। ପ୍ରୌଢ଼ୀ କଇଁଆ ଗଛ ଓ ପଡ଼ିଆଟି ଦେଖେଇ ନିଧିଆ କହିଲା, "ଏ ଗଛରେ ଆମେ ଡାଳମାଙ୍କୁଡ଼ି ଖେଳୁ। ତମେ ଡାଳ ମାଙ୍କୁଡ଼ି ଖେଳ ଜାଣ ?" ଗୋପାଳ ହଁ କଲାରୁ ପୁଣି ନିଧିଆ କହିଲା, "ବିର-ଜୁଆଟା ଡାଳମାଙ୍କୁଡ଼ି ଖେଳ ଜାଣେ ନାହିଁ। ଜାଣିବ କୁଆଡୁ ? ସେଇଟା

ପଚ୍ଚା ଦେଉଛ। ଆମେ ଖେଳୁଥାଉ କି ସେଇଟା ଆମକୁ ବଲବଲ କରି ଅନେଇଁଥାଏ । ବରଜୁଆ କିମିତି ଚାଲେ ଦେଖିବ ?" ଏହା କହି ନଧିଆ ଗୁଡ଼ୁଚେଇ ଗୁଡ଼ୁଚେଇ ଚାଲିବାକୁ ଆରମ୍ଭ କଲା । ବାଁ ପଟକୁ ଡାହାଣ ଗୋଡ଼କୁ ହଲେଇ ହଲେଇ ଗମ୍ଭୀରଭାବରେ ଚାଲିବାର ଦେଖି ଗୋପାଳ ନିଜର ସମସ୍ତ ଚିନ୍ତାକୁ ଭୁଲିଯାଇ ଠୋ ଠୋ ହସି ପକେଇଲେ । ନଧିଆକୁ ବୋଧହୁଏ ଟିକିଏ ଅପମାନ ହେଲା । ସେ ରୁଷ୍ଟ ହୋଇ କହିଲା, "ହସୁଛ କଣ ମ ? ବରଜୁଆକୁ ଦେଖେଇ ଦେବି ଯେ । ସେ ଠିକ୍ ଇମିତି ଚାଲେ ।"

ଗୋପାଳ ହସ ବନ୍ଦ କରି ଚାଲିଲେ । ଖଣ୍ଡେ ଦୂର ଗଲା ପରେ ନଧିଆ ପଚାରିଲା, "ବାବୁ ମ, ଏ ବାବୁ, ତମେ ଭୂତ ଦେଖିଚ ? ଆମ ଗାଁରେ ଯୋଡ଼ାଏ ଭୂତ ଅଛନ୍ତି । ଦେଖିବ ?"

ଗୋପାଳ ଟିକିଏ ମୁରୁକି ମୁରୁକି ହସି କହିଲେ, "ଦେଖି ନେଇଁ ଯେ, ଦେଖେଇଦେଲେ ଦେଖନ୍ତି ।"

ନଧିଆ ଭାରି ବଡ଼ ମଣିଷ ପରି ଗମ୍ଭୀରଭାବରେ ଉତ୍ତର ଦେଲା, "ଆଚ୍ଛା ହଉ, ବୋଉକୁ କହିବି । ଦେଖେଇ ଦେବ ।"

ଆଉ ଖଣ୍ଡେ ଦୂର ଗଲା । ସେମାନେ ସାଇ ଭିତରେ ପଶିଲେ । ନଧିଆ ଗୋଟାଏ ଘର ଦେଖେଇ କହିଲା, "ଏ ଘରେ କିଏ ଥାଏ କହିଲ ଦେଖି ?" ଗୋପାଳ କହି ନ ପାରିବାରୁ ତାଙ୍କ ମୂର୍ଖତାରେ ଟିକିଏ ଅବଜ୍ଞାରେ ହସିଦେଇ ନଧିଆ କହିଲା, "ଏ ପରା ମଧୁ ଗୋସେଇଁଙ୍କ ଘର । ସେ ମୋତେ ଭାରି ସୁଖ ପାନ୍ତି । କଲିକତାରୁ ଆଇଲା ବେଳେ ମୋ ପେଇଁ ଭାରି ଭଲ ଜିନିଷ ଆଣନ୍ତି ।" ମଧୁ ଗୋସେଇଁ ଓ ତାଙ୍କ ଆଣୁଥିବା ଭଲ ଜିନିଷ ବିଷୟରେ ଆଉ କେତେ କ'ଣ ଶୁଣିବାକୁ ହୋଇଥାନ୍ତା, ମାତ୍ର 'ଘର'ଆସି ହୋଇଗଲାରୁ ନଧିଆର ବାକ୍ୟସ୍ରୋତ ରୁଦ୍ଧ ହୋଇଗଲା ।

ଜଗୁଆ ମା ଆଗରୁ ଆସି ଦାଣ୍ଡ ପିଣ୍ଡାରେ ଖଣ୍ଡିଏ ପୁରୁଣା ମଶିଣା ପକେଇଦେଇ, ପାହାଚରେ ଢାଳେ ପାଣି ଥୋଇ, କବାଟ-କୋଣରେ ଠିଆ ହୋଇଥାଏ । ଜଗୁଆ ବଲ ବାଡ଼ି କାମରୁ ଗାଧୋଇ ଲୁଗା ପଟା ଧୋଇ ଫେର ଅପୂର୍ବ ଧରଣର ଅତିଥିଙ୍କର କ ସେବା କରିବ ବୁଝିନପାରି ତାଙ୍କ ପ୍ରତୀକ୍ଷାରେ ଦାଣ୍ଡଦୁଆରେ ଠିଆ ହୋଇ-ଥାଏ । ନଧିଆ ଗୋପାଳଙ୍କୁ ସାଙ୍ଗରେ ଧରି ଘରର ଦାଣ୍ଡଦୁଆର ହତାଭିତରେ ପଶିଲେ ।

ଘରକୁ ଦେଖି ଗୋପାଳ ଜାଣିଲେ, ଏ ଘର କେବେ ସ୍ୱଚ୍ଛଳ ଅବସ୍ଥାରେ ରହିନାହିଁ କମ୍ବା ଏ ଘର ଦାଣ୍ଡଦୁଆର ବାଟେ ଯେଉଁ-ମାନେ ଯିବା ଆସିବା କରନ୍ତି, ସେମାନଙ୍କ ଅଣ୍ଟାରେ କୌଣସି ସମୟରେ ଟଙ୍କାକରୁ ବେଶୀ ରହିନାହିଁ ; କନ୍ତୁ ଘରଟି ଖୁବ୍ ପରିଷ୍କାର ; ମାଟି ଗୋବରରେ ଖୁବ୍ ସୁନ୍ଦର ସହିତ ଲିପା ହୋଇଛି । ଦାଣ୍ଡଦୁଆର ଆଗରେ ଗୋଟିଏ ଛୋଟ ବଗିଚ୍ଚ । ବଗିଚ୍ଚରୁ ଖଣ୍ଡେ ଫଳନ୍ତ ବାଇଗଣ ଗଛରେ ପୂର୍ଣ୍ଣ, ଆଉ ଖଣ୍ଡକରେ ଗୋଟାଏ ଯୋଡ଼ାଏ ପୋଇ ବୁଦା । ବଗିଚ୍ଚଟି ଖୁବ୍ ପରିଷ୍କାର—ଜଗୁଆ ମାର ପରିଶ୍ରମର ଗୋଟିଏ ଉଜ୍ଜ୍ୱଳ ଦୃଷ୍ଟାନ୍ତ ।

ଗୋପାଳ ଗୋଡ଼ ଧୋଇସାରି ମଶିଣାରେ ଯାଇ ବସିଛନ୍ତି, ନଧିଆ ଉପରେ ଦୃଷ୍ଟି ପଡ଼ିଗଲା । ନଧିଆ ମନଟା ଭାରି ଖରାପ ହୋଇ-ଯାଇଥାଏ । ଗୁନ୍ଦିଆକୁ ଦେଖିବା ନିମନ୍ତେ ଆଗ୍ରହ ପ୍ରକାଶ ନ କରି ବସିବାକୁ ବାହାରିବାଦ୍ୱାରା ନଧିଆ ପ୍ରତି ଅପମାନ ହେବାର ବୁଝି ଗୋପାଳ କହିଲେ, "କାହିଁ, ଗୁନ୍ଦିଆ ଦାମୁଡ଼ ତ ଦେଖିଲି ନାହିଁ ?"

ନଧିଆ ଆନନ୍ଦରେ "ଆସୁ ନା" ବୋଲି କହି ଗୁହାଳ ଘରକୁ ବାଟ କଢ଼େଇନେଲା ।

ଗୃହଆର ନାନା ପ୍ରକାର ପ୍ରଶଂସା ଶୁଣି ଶୁଣି, ଗୃହଆର ବିଭିନ୍ନ ଅଂଶମାନଙ୍କର ଗୁଣ ବର୍ଣ୍ଣନା ମଧ୍ୟରେ ତାକୁ ଦେଖି ଗୋପାଳ ଫେରି ଆସି ବସିଲାରୁ ଜଗୁଆ ମା କହିଲା, "ତାଙ୍କୁ ଇମିତି କାହିଁକି ଇଠିକି ସିଠିକି କରୁଛୁ କରେ, ନଧିଆ ? ବାବୁ ଦୟା ନ କରିଥିଲେ ଏତେବେଳକୁ କାନ୍ଦ ବୋବାଳି ପଡ଼ିଥାନ୍ତା । ବାବୁ ! ମୋ ପିଲା ଯୋଡ଼ିକ ଦାମୁଡ଼ିଟିକୁ ଭରି ସୁଖ ପାନ୍ତୁ ।"

ତା ପରେ ଜଗୁଆ ମା ସେମାନଙ୍କର ପୂର୍ବ ଇତିହାସ ସବୁ ଶୁଣାଇଲା । କଥା ଶୁଣୁ ଶୁଣୁ ଗୋପାଳଙ୍କର ନାନା ପ୍ରକାର ଭବାନ୍ତର ହେଉଥାଏ । ମହାଜନର କ୍ରୂରତାରେ ତାଙ୍କ ଆଖିକୁ ଲୁହ ଆସୁଥାଏ ; ଶଠତାରେ ଆଖିରୁ ନିଆଁ ବାହାରୁଥାଏ । ହାୟ, ଅଶିକ୍ଷିତ ଦରିଦ୍ର କୃଷକ ପରିବାର ଉପରେ ଅର୍ଥପିପାସୁ ଅତ୍ୟାଚାରୀ କି ଦାରୁଣ ଆଘାତ ଦେଉଛି ! ଅର୍ଥ ନିମନ୍ତେ ଲୋକ ନିଜର ସମସ୍ତ ସଦ୍‌ବୃତ୍ତିକୁ କିପରି ଅବହେଳାରେ ତ୍ୟାଗ କରୁଅଛି ! ନିତାନ୍ତ ହୀନ ଜଘନ୍ୟ କାର୍ଯ୍ୟ କରିବାକୁ, ଦୁଃଖୀ ଦରିଦ୍ରଙ୍କ ଲୋତକମୟ ଘନିଶ୍ୱାସରେ ନିଜର ପାରତ୍ରିକ ଜୀବନକୁ ନରକଯନ୍ତ୍ରଣାମୟ କରିବାକୁ, ତିଳେ ମାତ୍ର କୁଣ୍ଠିତ ହେଉ ନାହିଁ ! ମନୁଷ୍ୟ ମନୁଷ୍ୟ ପ୍ରତି କେତେ ନିର୍ଦ୍ଦୟ ହୋଇ ପାରେ ! ଏହି ଚିନ୍ତା ଗୋପାଳଙ୍କୁ ବଡ଼ ଉଦାସୀନ କରି ପକାଇଲା, ନିର୍ଜନରେ ଜୀବନ କଟାଇଦେବା ନିମନ୍ତେ ତାଙ୍କ ସଙ୍କଳ୍ପ ଦୃଢ଼ତର ହେଲା ।

ନିଜ ଦୁଃଖର କାହାଣୀ ଶେଷକରି ସାରି ଜଗୁଆ ମା ସସଂଭ୍ରମରେ ଗୋପାଳଙ୍କୁ ଜିଜ୍ଞାସା କଲା, "ବାବୁ, ତମର ଏ ଗାଁରେ କଣ କାମ ମ ?"

ଗୋପାଳ ତାଙ୍କ ଭଡ଼ା ନେଇଥିବା ଜାଗା ଖଣ୍ଡିକରେ ବାସ କରିବା ଇଚ୍ଛା ପ୍ରକାଶ କରନ୍ତେ ଜଗୁଆ ମା ଅତି ଆଶ୍ଚର୍ଯ୍ୟରେ, "ଆଲୋ

ମୋ ମାଲେ ! ସିଠେଇ କଣ ମଣିଷ ରହନ୍ତି ? ହଇ ହେ ପୁଅ, ତମେ କଣ ବାୟା ହେଇଚ" । କହିବା ସାଙ୍ଗେ ସାଙ୍ଗେ ଜଗୁଆ କହିଲା, "ସିଠେଇ ଖାଲି ବାଘଗୁଡ଼ାଏ !"

ଗୋପାଳ ବହୁ ଚେଷ୍ଟା ପରେ ବୁଝାଇଦେଲେ ଯେ, ସେ ଜାଗାରେ ଯେତେ ବାଘ ଥାଆନ୍ତୁ ପଛେ ସେ ସେହି ସ୍ଥାନରେ ହିଁ ବାସ କରିବେ ; ତେବେ ଘର ଖଣ୍ଡେ ତିଆରି ହେଲେ ଗଲା ।

ଜଗୁଆ ମା—"ସିଠିକି କଣ ଲୋକ ଯିବେ ଘର ତୋଳିବାକୁ ?"

ଗୋପାଳ ଏ ଦିଗଟା ଦେଖି ନଥିଲେ ; ତେଣୁ ଟିକିଏ ଚିନ୍ତିତ ହେଲେ ; ମାତ୍ର ବେଶି କ୍ଷଣ ଚିନ୍ତା କରିବାକୁ ପଡ଼ିଲା ନାହିଁ । ଜଗୁଆ କୃତଜ୍ଞତା ପ୍ରକାଶ କରିବାର ଉପାୟ ପାଇ ଉତ୍ସାହ ସହିତ କହିଲା, "ଲୋକ ନମିଳିଲେ ନାହିଁ ବାବୁ ! ତମେ ମୁଁ ମିଶି ଘର ତୋଳି ଦେବା—ମୁଁ କାନ୍ଥ ଦେଇ ପାରିବି ଘର ଛପର କରି ପାରିବି । ଲୋକବାକ ଲୋଡ଼ା କାହିଁକି ?"

ଗୋପାଳ ଗ୍ରାମ୍ୟ ଯୁବକର ସହୃଦୟତାରେ ମୁଗ୍‌ଧ ହେଲେ । ଜଗୁଆ ମା ଗୋପାଳଙ୍କ ଉପକାର ସ୍ମରଣ କରି ପୁଅକୁ ଜଙ୍ଗଲ ଜାଗାକୁ ଛାଡ଼ିଦେବାରେ କିଛି ଆପତ୍ତି କରିନପାରି ତୁନି ହେଲା । କେବଳ ନଧିଆ କହିଲା, "ବାବୁ, ମତେ ନେବ ନାହିଁ ? ମୁଁ ମାଟି ଚକଟି ଦେବି, ନଡ଼ା ଗୁଳକୁ ପୋପାଡ଼ି ଦେବି ।"

ଗୋପାଳ ହସି ହସି ଉତ୍ତର ଦେଲେ, "ତୁ ନହେଲେ ଘର ତ ଆଦୌ ହୋଇ ପାରିବ ନାହିଁ !"

## ଛଅ

କନକଙ୍କ ସମସ୍ତ ଆଶା ବଜ୍ରଶିଳାରେ ବାଜି, ଭାଜି ଚୂରମାର ହୋଇଗଲା । ଯାହାକୁ ହୃଦୟ ଅର୍ପଣ କରିଥିଲେ, ଶରୀର ତା' ଠାରୁ

ଦୂରରେ ରଖିବା କି କଷ୍ଟକର ! ଗୋପାଳ ତାଙ୍କ ଘରୁ ବାହାରିଗଲା ଦିନ ଠାରୁ ଏପରିକି ତାଙ୍କ ଲେଖା ଚିଠି ଖଣ୍ଡି ଗୋପାଳଙ୍କ ହାତରେ ପଡ଼ିବା ବେଳୁଁ କନକଙ୍କର ହୃଦୟ ଘୋର ହାହାକାରରେ ପୂର୍ଣ୍ଣ ହୋଇଗଲା । ସମସ୍ତ ସରସତା, ସଂବେଗର ସମସ୍ତ ପ୍ରବୃତ୍ତି ତ୍ୟାଗ କରି ସେ ନିଃଶ୍ଚେଷ୍ଟ ହୋଇ ବସି ରହିଲେ ।

ଦୁଃଖୀ ରଙ୍କୀଙ୍କ ଦିନସବୁ ଭାରି ଲମ୍ବା ହୋଇଯାଏ, ବଡ଼ ଉଛୁରରେ ସରେ; ମାତ୍ର ଚିନ୍ତାଦକର ଦିନରାତି ଏକବାରେ ଅସରନ୍ତି !

ସ୍କୁଲକୁ ଯିବା କାର୍ଯ୍ୟଟା କର୍ତ୍ତବ୍ୟରୂପେ ମୁଣ୍ଡରେ ବସିଥିବାରୁ ଯନ୍ତ୍ରଚାଳିତ ହୋଇ କନକ ସେଥିରେ ସାତଘଣ୍ଟା ଖଣ୍ଡେ କଟାଇ ଦେଉଥିଲେ । ସାଙ୍ଗ ପିଲାଙ୍କ ଆନନ୍ଦରେ ନିଜର ଦୁଃଖ ଚୃପା ପଡ଼ି ରହିଯାଉଥିଲା । ମାତ୍ର ନିର୍ବାଚନ ପରୀକ୍ଷା ସରିବାରୁ ଏବେ କେତେଦିନ ହେଲା ସ୍କୁଲକୁ ଯିବାକୁ ପଡୁନାହିଁ । ସାଙ୍ଗ ଝିଅମାନେ ପରୀକ୍ଷାକୁ ତିଆର ହେବାପାଇଁ ସମୟ ପାଇଛନ୍ତି । କନକଙ୍କର ସର୍ବଗ୍ରାସୀ ଚିନ୍ତାକୁ ଅନବଚ୍ଛିନ୍ନ ସମୟ ମିଳୁଛି ।

ବସି ବସି ସମୟ ନ କଟିବାରୁ କନକ ପଢ଼ାସାଥୀ କୁମୁଦିନୀ ଘରକୁ ବାହାରିଲେ । କୁମୁଦିନୀଙ୍କ ଘର ତାଙ୍କ ଘରର ଖୁବ୍ ନିକଟରେ । ତାଙ୍କ ପକ୍କା କନକଙ୍କ ବଗିଚାକୁ ଦିଶେ । କୁମୁଦିନୀଙ୍କ ବାପା ଥିଲେ କଟକ କଲେଜର ପ୍ରଫେସର । ପ୍ରଫେସର ରଘୁବାବୁ ଜୀବନଯାକ ସମ୍ପତ୍ତି ସଞ୍ଚୟ କରିବାରେ କଟାଇ ଦେଇଥିଲେ । ପାଠପଢ଼ା ବିଷୟରେ ତାଙ୍କର ଏକାବେଳେ ମନ ନ ଥାଏ । କ୍ଲାସରେ ପାଠପଢ଼ା ବିଷୟ କେହି ଉତ୍ଥାପନ କଲେ ସେ ତାଙ୍କ ବିଶିଷ୍ଟ ହସ ଟିକକ ହସି ଦେଇ ଉତ୍ତର ଦିଅନ୍ତି, "ବୁଝିଲ ନାହିଁ କି ? ଆମେ ତ ତୁମକୁ ପଢ଼ାଇବା ପାଇଁ ଦରମା ପାଇ ଏଠାରେ ବସି ନାହୁଁ । ଆମେ ପିଲାଦିନଯାକ ପରିଶ୍ରମ କରି ପାଠ ହାସଲ କରିଛୁ

ବୋଲି ସରକାର ଆମକୁ ଦରମା ଖୁଆଉଛନ୍ତି ।” ପିଲାମାନେ ପ୍ରଶ୍ନ କରନ୍ତି, “ତେବେ ପ୍ରଫେସରମାନେ ଆମ ଆଗକୁ ଆସିବାର ଫଳ କଣ ?” ତେମ ଆମେ ଏ ପ୍ରଶ୍ନରେ ଚେଜ ଉଠନ୍ତେ, ମାତ୍ର ଗୁରୁବାବୁ ହସିଦେଇ ଉତ୍ତର ଦିଅନ୍ତି, “କେବଳ ପାଠରେ ମନ ଦେଇ ପଢ଼ିଲେ ତୁମର ଅର୍ଥୋପାର୍ଜନ ହେବ—ଏ କଥାର ଆମ୍ଭେମାନେ ଗୋଟିଏ ଗୋଟିଏ ‘ଜୀବନ୍ତ, ମୂର୍ତ୍ତିମନ୍ତ ଉଦାହରଣ ।’ ଆମକୁ ଦେଖି ତୁମେ ପଢ଼ ।” ପାଠପଢ଼ାରେ ଯତ୍ନ ନେବା ଦିଗଟି ଏହିପରି ହସରେ ଉଡ଼ାଇ ଦେଇ ଗୁରୁବାବୁ ଟଙ୍କା ସଞ୍ଚୟରେ ଏପରି ମନପ୍ରାଣ ଲଗାଇଦେଲେ ଯେ ; ତାଙ୍କ ମଲା ବେଳକୁ ପୁତ୍ର ବୀରେନ୍ଦ୍ର ଏବଂ କନ୍ୟା କୁମୁଦିନୀ ପ୍ରାୟ ଲକ୍ଷାଧିକର ଉତ୍ତରାଧିକାରୀ ହେଲେ ।

କନକ କୁମୁଦିନୀର ପଢ଼ିବା ଘରେ ଯାଇ ବସିଲେ । କୁମୁଦିନୀ ଇଂରେଜୀ ବହି ଧରି ବସିଥାଏ । କୁମୁଦିନୀ ବହୁତ ପଢ଼େ ଖୁବ୍, ମାତ୍ର ତାର ଭାଇ ପରି ତାର ମୁଣ୍ଡଟିରେ ପଢ଼ାପଢ଼ି ବିଷୟ ଠିକ୍‌ଏ ପଶେ ନାହିଁ । ସାଂସାରିକ ଅନ୍ୟ ସବୁ ବିଷୟରେ ସେ ଦୁହିଁଙ୍କର ପ୍ରବେଶ ଖୁବ୍ ବେଶୀ, ମାତ୍ର ପାଠପଢ଼ା ବେଳକୁ ତାଙ୍କ ବୁଦ୍ଧିର ଦ୍ୱାର ରୁଦ୍ଧ ହୋଇଯାଏ ।

କନକ କୁମୁଦିନୀ ହାତରୁ ବହିଟା ଛଡ଼ାଇ ଆଣି କହିଲେ, “କିଲୋ କୁମ୍, ତୋର ତ ସବୁବେଳେ ପଢ଼ାପଢ଼ି ଲଗିଛି । ମୋର ତ କାହିଁକି ମନ ଲଗିଲା ନାହିଁ ?”

କୁମ ନବ୍ୟ ଝିଅ ଛାତ୍ରଛାତ୍ରୀମାନଙ୍କର ସ୍ୱଭାବସିଦ୍ଧ ଦୀର୍ଘ ନିଶ୍ୱାସଟି ପକାଇ କହିଲା “ହଁ ଲୋ କନ ! ତୁ ତ ଘଣ୍ଟେ ବସି ଯୁ’ତକ ପଢ଼ିବୁ, ଆମେ ସବୁ ଚାରି ଚାରି ଘଣ୍ଟାରେ ତା’ କରି ପାରିବୁ ନାହିଁ । ଆମେ ଆଉ ତୁ ! ମନ ଲାଗୁ କି ନ ଲାଗୁ ପଢ଼ି ବସିବାକୁ ହେବ ।

ଆସ୍ଥ, ଥାଉ ସେ ପୋଡ଼ା ପାଠ କଥା । ତୋ ମନ କାହିଁକି ପଢ଼ାରେ ଲାଗୁ ନାହିଁ ମ ?"

କନକ ନିଜର ଚିନ୍ତା ନିଜେ ରଖିବା ସଂକଳ୍ପରେ ଉତ୍ତର ଦେଲେ, "କେଜାଣି କାହିଁକି, ପଢ଼ି ବସିଲ ବେଳକୁ ତ ସଂସାର-ଯାକର ସବୁ ଚିନ୍ତା ମୁଣ୍ଡଉପରେ ଆସି ବସିଯାଉଛି ।"

କୁମ—ଆମ ବୀର ଭାଇ ତ ଠିକ୍ ସିମିତି ହଉଛି । ଦିନେ କ୍ଲାସକୁ ଗଲେ ଚାରିଦିନ ପଡ଼ିଆ ରହୁଛି । ଖାଲି ସବୁବେଳେ ବହି ଖଣ୍ଡେ ଆଗରେ ପକେଇ କଣ ଭାବୁଛି । ଅଇଲାବେଳେ ତୁ ତାକୁ ଦେଖିଲୁ ନାହିଁକି ?

କନକ—ନା, ମୁଁ ତ ବୀରଭାଇଙ୍କି କେତେଦିନ ହେଲା ଦେଖି ନାହିଁ । ମୁଁ ଭାବୁଥିଲି, ସେ ବର୍ତ୍ତମାନ କଟକରେ ନାହାନ୍ତି ବୋଲି ।

କୁମ—ବାଃ, ତୁ' କଣ ଚିନ୍ତା କରୁଛୁ ଯେ, ଦାଣ୍ଡକୁ ବାହାରୁ ନାହୁଁ ? ସେ ବି କଣ କରୁଛି ଯେ ପଢ଼ା ଘର ଚଉକିରୁ ଉଠୁ ନାହିଁ ? ଏଣେ ସେ ଭାବୁଛି, ତୁ କୁଆଡ଼େ ଯାଇଛୁ, ତୁ ଭାବୁଛୁ ସେ କଟକରେ ନାହିଁ । ସେ ପର କାଲି ମୋତେ ତୋ କଥା ପଚାରୁଥିଲା ଲୋ !

ଏହା କହି କୁମୁଦିନୀ ଖୁବ୍ ହସିଲା । ନିଜ ସଙ୍ଗେ ବୀରେନ୍ଦ୍ରଙ୍କୁ ଏପରି ତୁଳନା କରିବା ଚେଷ୍ଟାକୁ ପସନ୍ଦ ନ କରୁଥିଲେ ହେଁ କନକ ବାଧ୍ୟ ହୋଇ ହସରେ ଯୋଗ ଦେଲେ ।

କନକ କଥାବାର୍ତ୍ତାର ଗତି ବଦଳାଇବା ପାଇଁ ଅନ୍ୟ ପ୍ରସଙ୍ଗ କେତେ ଉତ୍ଥାପନ କଲେ । କିନ୍ତୁ କୁମୁଦିନୀ ଥରକୁ ଥର ସେହି ବୀର ଭାଇ କଥା ଉଠାଉଥାଏ । ପ୍ରାୟ ଘଣ୍ଟେ ଖଣ୍ଡେ ପରେ କନକ ଉଠି ବାହାରିଲେ ଘରକୁ । କୁମୁଦିନୀ ଉପର ମହଲା ଶିଡ଼ିମୂଳ ପର୍ଯ୍ୟନ୍ତ ଆସି ବିଦାୟ ନେଇ ଟିକିଏ ହସି ହସି ଉପରକୁ ଚାଲିଗଲେ ; ଏ

ହସର କାରଣ କଣ ? ଏ ହସ ତ ନିଶ୍ଚୟ ଆନନ୍ଦର ଲକ୍ଷଣ ନୁହେଁ !

କନକ ଦାଣ୍ଡଘର ବାଟ ଦେଇ ଦାଣ୍ଡକୁ ବାହାରି ପଡ଼ୁଛନ୍ତି, ଠିକ୍ ଏପରି ସମୟରେ ପାଖ ଘରୁ ବୀରେନ୍ଦ୍ର ସତେ ଅବା ଘରି କରୁଣ ସ୍ୱରରେ ଡାକଦେଲେ, "କନକ, ଟିକିଏ ଇଆଡ଼େ ଆସିବ ନାହିଁ ?

କନକ ଚମକି ପଡ଼ି ଫେରିଲେ ଏବଂ ବୀରେନ୍ଦ୍ର ଥିବା ଘର-ଭିତରେ ପଶି ବୀରେନ୍ଦ୍ରଙ୍କ ଅନୁରୋଧକ୍ରମେ ଚଉକି ଗ୍ରହଣ କରୁ କରୁ କହିଲେ, "ଆପଣ ଏଠାରେ ଏପରି ଭୂନ ହୋଇ ବସିଛନ୍ତି ? ଆପଣ ଘରେ ନାହାନ୍ତି ବୋଲି ମୁଁ ବିଚାରିଥିଲି ।"

ବୀରେନ୍ଦ୍ର ଦୀର୍ଘ ନିଶ୍ୱାସର ଗୋଟିଏ ଚତୁର ଅଭିନୟ କଲେ ।

ବୀରେନ୍ଦ୍ରଙ୍କ ଆଗରେ ଟେବୁଲ ଉପରେ ଥୁଆ ହୋଇଥିବା ଗୋଟିଏ ଫଟୋ ଉପରେ କନକଙ୍କର ଦୃଷ୍ଟିପଡ଼ିଲା । ବୀରେନ୍ଦ୍ର ଦୋଷ କଲା ଭଳିଆ ସଙ୍କୋଚରେ ଫଟୋଟି ଉଠାଇ ନେବାର ଛଳନା-କଲେ । ତାଙ୍କ କାର୍ଯ୍ୟରୁ ଜଣାପଡ଼ିଲା, ସତେ ଯେପରି ଫଟୋ କନକ ଦେଖନ୍ତୁ ବୋଲି ତାଙ୍କର ଆଦୌ ଇଚ୍ଛା ନଥିଲା । କନକ ଏହି କଥା ବୁଝିଲେ ; କିନ୍ତୁ କନକ ଘର ଭିତରେ ପଶିବାର ଦେଖି ବୀରେନ୍ଦ୍ର ଫଟୋ ଖୋଜି ଟେବୁଲ ଉପରେ ନିଜ ସମ୍ମୁଖରେ ଯତ୍ନରେ ରଖିବାର ଯେ ଦେଖିଛୁ ଏବଂ କନକଙ୍କୁ ଡାକିବାବେଳେ ଫଟୋ ବୀରେନ୍ଦ୍ରଙ୍କର ବେଶ ମନେଥିଲା ବୋଲି ଯେ ଜାଣିଛୁ, ତାର ନିସଃନ୍ଦେହ ଧାରଣା ହୋଇଥିବ ଯେ, ଫଟୋଟି କନକଙ୍କୁ ଦେଖାଇବା ଦ୍ୱାରା, ନିଜେ କନକଙ୍କ ବିଷୟରେ ଖୁବ୍ ଚିନ୍ତା କରନ୍ତି ବୋଲି କନକଙ୍କ ଆଗରେ ସ୍ପଷ୍ଟ ପ୍ରମାଣ ଦେଇ ତାଙ୍କ ହୃଦୟ ଜୟ କରିବା ଚେଷ୍ଟାରେ ବୀରେନ୍ଦ୍ର ଏସବୁ ଆଗରୁ ସଜାଡ଼ିଥିଲେ ।

ଫଟୋଟି ଆଡ଼େଇ ଥୋଇଦେଇ ବୀରେନ୍ଦ୍ର କହିଲେ—"କନକ, ମାର୍ଜନା କରିବ । ତୁମ ଫଟୋଟି ଟେବୁଲ ଉପରେ ରଖିବାଦ୍ୱାରା ମୁଁ ଅନଧିକାର ଚର୍ଚ୍ଚା କରିଛି ।"

କନକ ଟିକିଏ ହସିଦେଇ ଅତି ସରଳ ଭାବରେ ଉତ୍ତର-ଦେଲେ—"ଏଥିରେ ପୁଣି ଗୋଟାଏ ଅନଧିକାର ଚର୍ଚ୍ଚା କଣ, ବୀର ଭାଇ ?"

ବୀରେନ୍ଦ୍ର ଉତ୍ସାହର ସହିତ ଉତ୍ତର ଦେଲେ, "ତୁମେ ମୋତେ ଏତେ ଦୟା ଦେଖାଇବା ଦ୍ୱାରା ଅନୁଗୃହୀତ କରିଛ ।"

କନକ ଟିକିଏ ଲଜ୍ଜିତ ହେଲେ । ଯୁବତୀସୁଲଭ ଚତୁରତା ବଳରେ ସେ ବେଶ୍ ବୁଝିନେଲେ, ବୀର ଭାଇ କଥାଟାକୁ ଟିକିଏ ଅନ୍ୟ-ଆଡ଼େ ନେଉଛନ୍ତି । ତାଙ୍କର ଟିକିଏ ରାଗ ହେଲା । ସେଠାରୁ ତତ୍-କ୍ଷଣାତ୍ ଉଠି ଘରକୁ ଚାଲିଯିବାପାଇଁ ଇଚ୍ଛାହେଲା । କିନ୍ତୁ ରାଗ ଦମନକରି ଭଦ୍ରତା ଅନୁରୋଧରେ ସେ ଉତ୍ତରଦେଲେ, "ଏଥିରେ ପୁଣି ଅନୁଗ୍ରହ କଣ ବୀର ଭାଇ ? ଆପଣ ମୋ ଫଟୋଟି ଦେଖୁଥିଲେ ; କିନ୍ତୁ ତାହାର ଅଧିକାରିଣୀ ତ ମୁଁ ନୁହେଁ—କୁମ । ଫଟୋଟି ତାର—ସେ ଯାହାକୁ ଇଚ୍ଛା ତାକୁ ଦେଇପାରେ ଏବଂ ଫଟୋଟି ଯାହା ହାତରେ ପଡ଼ିଲା ସେ ଦେଖିପାରେ ।"

ବୀରେନ୍ଦ୍ର ଅପ୍ରତିଭ ହେଲେ ଏବଂ ଭାରି ଚିନ୍ତିତ ହେଲାପରି ବସି ରହିଲେ ।

ଏପରି ତୁନିହୋଇ ବସିରହିବା କନକଙ୍କୁ ଆଦୌ ଭଲ ଲାଗୁ ନଥାଏ । କିପରି ଉଠି ଚାଲିଗଲେ ହୁଅନ୍ତା, ମାତ୍ର ବୀର ଭାଇ କଣ ଭାବୁଥିବେ ! ଏଣେ ସେ ତ କିଛି କଥା କହୁ ନାହାନ୍ତି । ବାଧ୍ୟ ହୋଇ କନକ କହିଲେ—"କୁମ ତ କହୁଥିଲା, ଆପଣଙ୍କ ଦେହ ଆଜିକାଲି ଭଲ ନାହିଁ, ଆପଣ କଲେଜ ଯାଉନାହାନ୍ତି ।"

ବୀରେନ୍ଦ୍ର ବିରକ୍ତ ଏବଂ ମାନସିକ ଅଶାନ୍ତିବ୍ୟଞ୍ଜକ ସ୍ୱରରେ ଉତ୍ତରଦେଲେ, "ତୁମ କହୁଥିଲ ? ତୁମ ତ ଘରି ଡାକ୍ତର ! (ଟିକିଏ ଫିକା ହସ ହସି) ହଁ, ଦେହ ଭଲ ନାହିଁ । ତେବେ ଦେହ ଭଲ ନାହିଁ କି ମନ ଭଲ ନାହିଁ, ଠିକ୍ କହିପାରିବା କଠିନ । ମୋ ବିଷୟ କିପରି ପଡ଼ୁଥିଲ କି ?"

କନକ ହସି ହସି ଉତ୍ତର ଦେଲେ—"କାହିଁକି, ଆପଣଙ୍କ ବିଷୟ ତୁମ ଓ ମୋ ଭିତରେ ପଡ଼ିବା କଣ ଏପରି ଗୋଟାଏ ଆଶ୍ଚର୍ଯ୍ୟ କଥା । ଆପଣ କଣ ତୁମର ଅପରିଚିତ ନା ମୋର ଅପରିଚିତ ଯେ ଆଶ୍ଚର୍ଯ୍ୟ ଲାଗୁଛି ?"

ବୀରେନ୍ଦ୍ର – ନା, ମୁଁ ଏତେ କଥା ବିଚାରି ପ୍ରଶ୍ନ କରି ନଥିଲି । କେଉଁ ସୂତ୍ରରେ ମୋ କଥା ପଡ଼ୁଥିଲା, ତାହାହିଁ ମୋର ପଚାରିବାର ଉଦ୍ଦେଶ୍ୟ ।

କନକ—ସେ କଥା ତ ମୁଁ ଆଗରୁ କହୁଛି– ତୁମର ମୋର କଥାବାର୍ତ୍ତା ହେଉ ହେଉ ତୁମ କହିଲ—ଆପଣଙ୍କ ଦେହ ଖରାପ ଅଛି । ଡାକ୍ତର ଡକାଇଥିଲେ ?

ବୀରେନ୍ଦ୍ର – ନା, ଡାକ୍ତର ଦେଖିବାର ପ୍ରୟୋଜନ ନାହିଁ । ଦେଖି ବା କଣ କରିବେ ? ଏ ରୋଗ ଭଲ ହେବାର ନୁହେ । ଏଥିରେ ଡାକ୍ତରଙ୍କ ସମସ୍ତ ଚେଷ୍ଟାସତ୍ତ୍ୱେ ଟିକି ଟିକି ହୋଇ ପ୍ରାଣ ଶୋଷି ହୋଇଯିବ ।

ଏଥର କନକ ବୀରେନ୍ଦ୍ରଙ୍କ କଥାରେ ବାସ୍ତବିକ୍ ବିଚଳିତ ହୋଇ ପଚାରିଲେ –"କାହିଁକି ? ଆପଣଙ୍କର ଏପରି କଣ ହୋଇଛି କି ? ଆମେ ଏତେ ନିକଟରେ ଅଛୁ, କିଛି ତ ଶୁଣିଲୁ ନାହିଁ ! ଆପଣ ଆମ ଘରକୁ ଯାଇ ବାପାଙ୍କ ପରାମର୍ଶ ନେଉନାହାନ୍ତି ? ବାପାଙ୍କୁ ଏ ବିଷୟ ପଚାରିଥିଲେ ?"

ଖରେନ୍ଦ୍ରଙ୍କ ମନରେ ହଠାତ୍ ଗୋଟାଏ ନୂଆ କଥା ମନେ ପଡ଼ିଗଲା । ସେ କହିଲେ, "ହଁ, ବାପାଙ୍କୁ ଏ କଥା କହିବାକୁ ହେବ । ସେ କିଛି କରିପାରନ୍ତି ।"

ସରଳା କନକ ଖରେନ୍ଦ୍ରଙ୍କ ଅବସ୍ଥା ଚିନ୍ତା କରିକରି ଫେରିଲେ । ଏପରି କଣ ଗୋଟାଏ ବେମାରି ହୋଇଛି ଯେ, ଡାକ୍ତର ଡାକିଲେ ବି କିଛି ଫଳ ହେବ ନାହିଁ ? ଈଶ୍ୱରଙ୍କ ବିଧାନ କେଡ଼େ ବିଚିତ୍ର, କେଡ଼େ ଅବୋଧ ! କେତେ ବିଚିତ୍ର, କେତେ ସୁନ୍ଦର ସଂସାର ସେ ମନୁଷ୍ୟପାଇଁ ସୃଷ୍ଟି କରିଛନ୍ତି, କେତେ ସ୍ନେହ, କେତେ ଦୟାରେ ସମସ୍ତ ପ୍ରାଣୀଙ୍କ ଉପରେ ସମ୍ରାଟ୍ କରି ପରମେଶ୍ୱର ମନୁଷ୍ୟଙ୍କୁ ଜନ୍ମ ଦେଇଛନ୍ତି ! କିନ୍ତୁ—ମନୁଷ୍ୟ ଯଦି ଈଶ୍ୱରଙ୍କ ପରମପ୍ରିୟ ସନ୍ତାନ, ତେବେ ସେହି ପରମପ୍ରିୟ ସନ୍ତାନଙ୍କୁ କଷ୍ଟ ଦେବାପାଇଁ ରୋଗ ସୃଷ୍ଟି କରିବାରେ ତାଙ୍କର କେଉଁ ଅଜ୍ଞାତ ଉଦ୍ଦେଶ୍ୟ ଅଛି ? ଯଦି ବା ରୋଗର ସୃଷ୍ଟି, ତେବେ ସବୁ ରୋଗ ପାଇଁ ଆରୋଗ୍ୟ ବିଧାନ ଅଛି ନା ନାହିଁ ? ଯଦି ଅଛି, କାହିଁକି ଅଛି ? ରୋଗ ଦେଇ ଆରୋଗ୍ୟ ବିଧାନ କରିବାରେ ରହସ୍ୟ କଣ ? ଯଦି ନାହିଁ—ତେବେ ନିଜର ସନ୍ତାନ ପ୍ରତି କି କଠୋର ନିର୍ମମତା !—ଏହିପରି କେତେ କଥା ଭାବୁଁ ଭାବୁଁ କନକ ଆସି ନିଜ ଘରେ ପହଞ୍ଚିଲେ ।

## ସାତ

ଏବେ କେତେ ଦିନ ହେଲା ଖରେନ୍ଦ୍ର ମଦନ ବାବୁଙ୍କର ଖୁବ୍ ପ୍ରିୟ ସଙ୍ଗୀ ହୋଇଛନ୍ତି । ଦିନର ପ୍ରାୟ ସମସ୍ତ ସମୟ ଖରେନ୍ଦ୍ର ମଦନ ବାବୁଙ୍କ ଆରାମଚୌକି ଆଗରେ ଗୋଟିଏ ଚଉକିରେ ବସି ସଂସାର-ଆଡ଼ର ଭିନ୍ନ ଭିନ୍ନ କଥା ବିଷୟରେ ମତ ପଚାରୁଥାନ୍ତି ଏବଂ ମଦନ ବାବୁ ଯାହା କହନ୍ତି, ସେଥିରେ ନିଜର ପୂର୍ଣ୍ଣ ସମ୍ମତି ଜଣାଇଦେଉ-

ଥାନ୍ତି । ବାର୍ଦ୍ଧକ୍ୟସହଜ ଗଳ୍ପପ୍ରିୟତା ମଦନ ବାବୁଙ୍କ କଠୋର ହୃଦୟକୁ କ୍ରମେ କ୍ରମେ ଆକ୍ରମଣ କରୁଥିଲା । ବୀରେନ୍ଦ୍ରଙ୍କ ପରି ଧୀର ଶ୍ରୋତା ପାଇ ତାଙ୍କର ଗଳ୍ପ କରିବା ପ୍ରବୃତ୍ତି ଦୁଇଗୁଣ ବଢ଼ିଗଲା ଏବଂ ନିଜ କଥାରେ ବୀରେନ୍ଦ୍ର ବିନା ଆପତ୍ତିରେ ସମ୍ମତି ଜଣାଇବା ହେତୁ ତାଙ୍କ ପ୍ରତି ବୃଦ୍ଧ ଆକୃଷ୍ଟ ହେବାକୁ ଲାଗିଲେ ।

ହଠାତ୍ ମଦନବାବୁ ଗୁଡ଼ାଖୁ ଖାଉ ଖାଉ ଟିକିଏ କାଶି କହିଲେ, "ଆଚ୍ଛା, ବୀରେନ୍ଦ୍ର, ଆଜିକାଲିର ଏ ଚାକରଗୁଡ଼ାକ ବଡ଼ ବଢ଼ିଆ ହେଇଯାଉଛନ୍ତି । ନା ? ତୁମର ମତ କଣ ?"

ଏ ବିଷୟରେ ବୀରେନ୍ଦ୍ରଙ୍କର ବିଶେଷ କୌଣସି ମତ ନ ଥିଲା । ସେ ଏଥିପୂର୍ବରୁ ଚାକରବାକରଙ୍କ ବିଷୟରେ କିଛି ବିଚାରିନଥିଲେ, ଏପରିକି ନିଜ ଘର ଚାକରମାନଙ୍କ ବିଷୟରେ—କେତେଜଣ ଚାକର ଥାନ୍ତି, କେତେ ଦରମା ପା'ନ୍ତି, କଣ କାମ କରନ୍ତି, କେତେ କରନ୍ତି, କିଛି ଖବର ରଖୁନଥିଲେ । ତାଙ୍କର ମା ଏତେ ଦିନଯାଏ ଏସବୁ ବୁଝୁଥିଲେ । ଏବେ ମା ମରିଯିବା ଦିନୁ କୁମୁଦିନୀ ସବୁ ଭାର ନେଇଛି । କୁମୁଦିନୀ ଚାକରମାନଙ୍କର ମାଲିକ, ବୀରେନ୍ଦ୍ର ନିଜ ଘରର ଯେଉଁ ଜଣେ ଅଧେ ଚାକରଙ୍କୁ ଚିହ୍ନିଥିଲେ, ସେମାନଙ୍କୁ ତାଙ୍କର ଚାକର ବୋଲି କହିବା ଠିକ୍ ହେବ ନାହିଁ । ସେମାନେ ଥିଲେ ତାଙ୍କର ବନ୍ଧୁ, ଗୁପ୍ତରେ—ନାନା ପ୍ରକାର ଆପତ୍ତିଜନକ କାର୍ଯ୍ୟରେ ସାହାଯ୍ୟକାରୀ । ଏମାନଙ୍କ ଉପରେ ନିଜର କର୍ତ୍ତୃତ୍ୱ ଜାରି କରିବା ତ ଦୂରର କଥା, ଏମାନଙ୍କୁ ସବୁବେଳେ ସେ ନାନାବିଧ ଉପାୟରେ ନିଜ ଉପରେ ଅନୁରକ୍ତ ରଖିବାକୁ ଚେଷ୍ଟା କରୁଥିଲେ ଏବଂ ଏମାନଙ୍କୁ ସବୁବେଳେ ଭୟ କରୁଥିଲେ ।

ସେ ଯାହା ହେଉ, ଚାକରମାନଙ୍କ ବିଷୟରେ ତାଙ୍କର ବିଶେଷ ଅଭିଜ୍ଞତା ଥାଉ ବା ନ ଥାଉ, ଚାକରମାନଙ୍କ ଦୋଷ ଦେଖିବା ପରି-

ବର୍ତ୍ତେ ସବୁବେଳେ ସେ ଚାକର ଜଣକେତଙ୍କର ଭୟରେ ଥିଲେ ସୁଦ୍ଧା, ମଦନ ବାବୁ ପ୍ରଶ୍ନଟି ପଚାରିଦେବା ମାତ୍ରେ, ତାଙ୍କୁ ପ୍ରୀତ କରିବା ଉଦ୍ଦେଶ୍ୟରେ ସେ ତିଳେ ମାତ୍ର ବିଳମ୍ବ ନ କରି ଉତ୍ତର ଦେଲେ, "ଆଜ୍ଞା ଏ କଥା ପୁଣି ପଚାରୁଛନ୍ତି ? ମୁଁ ତ ପ୍ରାୟ ସବୁବେଳେ ଏହି କଥା ବିଚାରେ । ବାସ୍ତବିକ୍ ଆଜିକାଲି ଯୁଗରେ ଛୋଟଲୋକଗୁଡ଼ାକ ଉପରେ ମାଡ଼ିବସିଲେଣି । ଏ ଗାନ୍ଧିଙ୍କ ପ୍ରଭାବରେ ଭଲ ତ ଯାହା ହେବ ଆଗରୁ ଜଣାଯାଉଛି, ଲାଭ ଭିତରେ ଏତିକି ଯେ, ମଣିଷ ଆଉ ଟିକିଏ ସୁଖ ସ୍ୱାଚ୍ଛନ୍ଦ୍ୟରେ ରହିପାରୁନାହିଁ ।"

ଗୁରୁଙ୍କୁ ଶିଷ୍ୟ ଟପିଗଲେ ! ମଦନ ବାବୁ ଚାକରଙ୍କ ଦୌରାତ୍ମ୍ୟ ବିଷୟରେ ଅନେକ ଦିନୁଁ ଧରି ଦୃଢ଼ମତ ପୋଷଣ କରୁଥିଲେ ହେଁ ଏଥି ନିମନ୍ତେ ଗାନ୍ଧିଙ୍କୁ ଦୋଷୀସାବ୍ୟସ୍ତ କରିବାକୁ ପ୍ରସ୍ତୁତ ନ ଥିଲେ । ସେ କହିଲେ, "ନା, ଗାନ୍ଧିଙ୍କ ସଙ୍ଗେ ଏଥିର ସମ୍ବନ୍ଧ ଅଛି କି ନାହିଁ ସେ ବିଷୟରେ ମୁଣ୍ଡ ଘୂରାଇବାର ବିଶେଷ କିଛି ପ୍ରୟୋଜନ ନାହିଁ । ଆମେ ପଇସା ଖର୍ଚ୍ଚ କରି ଚାକର ରଖିଥାଉଁ, ଆମ ପଇସାର ଉପ-ଯୁକ୍ତ ପ୍ରତିଦାନ ପାଇବା ଆମର ହକ୍ ଦାବୀ । ଏଥି ନିମନ୍ତେ କଣ କରାଯାଇପାରେ କହିଲ ଦେଖି ?"

କୌଣସି ମତରେ ହଁ ଭରିଦେବା ଯେତେ ସହଜ ଏବଂ ଶୀଘ୍ରସାଧ୍ୟ, କୌଣସି କାର୍ଯ୍ୟ ସାଧନ ପାଇଁ ଉପାୟ ଚିନ୍ତା କରିବା ସେତେ ସହଜ ନୁହେଁ ; ବିଶେଷତଃ ବୀରେନ୍ଦ୍ରଙ୍କ ପକ୍ଷରେ ଏକା-ବେଳକେ ଅସମ୍ଭବ । ସେ ଅଗତ୍ୟା ତୁନି ହୋଇ ରହିଲେ ।

ବୀରେନ୍ଦ୍ର ତୁନି ହେବାର ଦେଖି ମଦନ ବାବୁ କହିଲେ, "ମୁଁ ଗୋଟିଏ ଉପାୟ ସ୍ଥିର କରିଛି । ଦୁଇ ଚାରି ଜଣ ବନ୍ଧୁଙ୍କ ଆଗେ କହିଲି, ସେମାନେ ହସରେ ଉଡ଼େଇଦେଲେ ; ତୁମେ କଣ ବିଚାରୁଛ କହିଲ ଦେଖି ! ଆମେ ଗୋଟିଏ ସମିତି ସ୍ଥାପନ କରିବା । ସେ ସମିତିର

ନାମ ଦେବା 'ଗୁକର ଦମନ ସଭା ।' ମଦନ ବାବୁଙ୍କୁ ଉପହାସ କରିବା ବା ଅନ୍ୟ କୌଣସି ପ୍ରକାରେ ବିରକ୍ତ ନ କରିବା ପାଇଁ ପୂର୍ବରୁ ଦୃଢ଼ସଂକଳ୍ପ କରିଥିଲେ ହେଁ 'ଗୁକର ଦମନ ସଭା' ନାମଟା ଶୁଣି ବୀରେନ୍ଦ୍ର ଅତର୍କିତ ଭାବରେ ଟିକିଏ ହସିପକାଇଲେ ; କିନ୍ତୁ ପର ମୁହୂର୍ତ୍ତରେ ହସକୁ ଚପିଦେଇ ଘୋର ଜିଜ୍ଞାସୁ ନୟନରେ ଗୁହିଁରହିଲେ । ମଦନ ବାବୁ ଟିକି ଟିକି କରି ସଭାର ମେମ୍ବରମାନଙ୍କର ପ୍ରବେଶିକା ଫିସ୍‌ଠାରୁ ଆରମ୍ଭ କରି ଉଦ୍ଦେଶ୍ୟ ଏବଂ ଉଦ୍ଦେଶ୍ୟ ସାଧନର ପ୍ରଣାଳୀ ସବୁ ବର୍ଣ୍ଣନା କରିଗଲେ । ତାଙ୍କ କଥା ଶୁଣିଲା ପରେ ବୀରେନ୍ଦ୍ର କହିଲେ, "ଏ କଥା ଶୁଣି ଯେଉଁମାନେ ହସିବେ ସେମାନେ ନିର୍ବୋଧ ଅଥବା କୌଣସି କଥା ତଳିରେ ବିଗୁର କରି ଶିଖି ନାହାନ୍ତି । ଆପଣ ଯେଉଁ ପ୍ରସ୍ତାବଟି କରିଛନ୍ତି, ତାହା କାର୍ଯ୍ୟରେ ପରିଣତ ହୋଇଗଲେ ବର୍ଷକ ଭିତରେ ଉପହାସ କରିବା ଲୋକେ ସେମାନଙ୍କର ଭୁଲ୍ ବୁଝିପାରିବେ ।"

ଏପରି ଜଣେ ଅନୁମୋଦକ ପାଇ ପ୍ରସ୍ତାବଟି ସତକୁ ସତ କାର୍ଯ୍ୟରେ ପରିଣତ ହେଲା । ମଦନବାବୁଙ୍କ ସଭାପତିତ୍ୱ ଏବଂ ବୀରେନ୍ଦ୍ରଙ୍କ ସଂପାଦକତ୍ୱରେ ପ୍ରଥମ ଅଧିବେଶନ ମଦନ ବାବୁଙ୍କର ବୈଠକଖାନାରେ ସୁସମ୍ପନ୍ନ ହେଲା । ଦୁଇ ଗୁରି ଜଣ ବୁଢ଼ା ମୁକ୍ତ୍ୟାର ଏବଂ ଗୁରି ପାଞ୍ଚ ଜଣ ଟୋକା ଓକିଲ ପ୍ରଥମ ଅଧିବେଶନରେ ପାଞ୍ଚ-ଟଙ୍କା ଲେଖାଏଁ ପ୍ରବେଶିକା ଫିସ୍ ଦେଇ ମେମ୍ବର ହେଲେ । ଗୁ ପାନ କରୁ କରୁ ସେହି ଗୁ' ତିଆରି କରିଥିବା ଗରିବ ବିଚରା ଏବଂ ତା'ର ସମବ୍ୟବସାୟୀମାନଙ୍କର ସର୍ବନାଶକଳ୍ପେ ବଜ୍ରଗମ୍ଭୀର ସ୍ୱରରେ ମଦନ ବାବୁଙ୍କ ଉର୍ବର ମସ୍ତିଷ୍କରୁ ବକ୍ତୃତା, ପ୍ରସ୍ତାବ ଏବଂ ନିୟମାବଳୀ ଅନର୍ଗଳ ବିନିର୍ଗତ ହେଲା । ଏ ନିୟମଗୁଡ଼ିକ କାର୍ଯ୍ୟରେ ପ୍ରୟୋଗ କରିହୋଇପାରିଥିଲେ ଅନ୍ତତଃ ଇହକାଳ ଗୁକର ବିଚରାଙ୍କର ଗତି

ଚୋଇ ରହିନଥାନ୍ତା; କିନ୍ତୁ ଗୃହକରମାନେ ଆନନ୍ଦିତ ହେବାର କାରଣ ଏହି ଯେ, ପ୍ରସ୍ତାବିତ ବ୍ୟବସ୍ଥାସବୁ ଯେତେ କଠୋର ହେଉ ନା କାହିଁକି, ସେଗୁଡ଼ିକ କାର୍ଯ୍ୟରେ ପରିଣତ କରିବା ଏକାବେଳକେ ଅସମ୍ଭବ ।

ପ୍ରଥମ ଅଧିବେଶନ ଶେଷରେ ମଦନ ବାବୁ ହୁକା ଗୁଡ଼ଗୁଡ଼ି ହାତରେ ଧରି ନିଜେ ଆଜି ଦେଶ ନିମନ୍ତେ ଓ ସମଗ୍ର ମାନବଜାତିର କଲ୍ୟାଣନିମନ୍ତେ ଯେ ମହତ୍ କାର୍ଯ୍ୟଟିର ସୂତ୍ରପାତ କରିଛନ୍ତି ପ୍ରଭୁ-ଶ୍ରେଣୀର ସ୍ୱାର୍ଥରକ୍ଷା ନିମନ୍ତେ ଯେ ଉତ୍କୃଷ୍ଟ ଉପାୟର ସୂଚନା ଦେଇଛନ୍ତି, ସେହି ବିଷୟରେ ଚିନ୍ତା କରୁଛନ୍ତି ; ବୀରେନ୍ଦ୍ର ପାଖରେ ବସି ପ୍ରସ୍ତାବଗୁଡ଼ିକ ଟାଇପ କରି ଭିନ୍ନ ଭିନ୍ନ ସ୍ଥାନମାନଙ୍କୁ ପଠାଇବାର ଉଦ୍ୟମ ଆରମ୍ଭ କରିଦେଇଛନ୍ତି । ମଦନ ବାବୁ କାର୍ଯ୍ୟବ୍ୟସ୍ତ ବୀରେନ୍ଦ୍ରଙ୍କୁ ଚାହିଁ ମନେ ମନେ ଭାବୁଥିଲେ, "ବାସ୍ତବିକ୍ ବୀରେନ୍ଦ୍ର ଭାରି ଦେଶସେବୀ ଉତ୍ସାହୀ ଯୁବକ । ବୀରେନ୍ଦ୍ର ମନୋଯୋଗ କରିନଥିଲେ ଏ ପ୍ରସ୍ତାବଟି ପ୍ରସ୍ତାବରେ ହିଁ ରହିଯାଇଥାନ୍ତା ।" ବୀରେନ୍ଦ୍ର 'ଗୃହକର ଦମନ ସଭା'ର ବୈଠକରେ ସଭାସଦମାନଙ୍କ ଉପହାସକୁ ଭ୍ରୂକ୍ଷେପ ନ କରି କହିଲେ, "ଏ ଗୃହକର-ଦମନ-ସଭାର ଭବିଷ୍ୟତ୍ ବିଷୟ ଚିନ୍ତାକଲାବେଳେ ବାସ୍ତବିକ୍ ମନରେ କି ଆନନ୍ଦ ଜାତ ହେଉଛି । ଯେଉଁ କାର୍ଯ୍ୟର ଭବିଷ୍ୟତ୍ ଫଳ ମହତ୍, ତାହାର ଆରମ୍ଭରେ ଆଡ଼ମ୍ବର ନ ଦେଖି ସାଧାରଣ ଲୋକେ ପ୍ରଥମେ ଆଗ୍ରହ ପ୍ରକାଶ କରନ୍ତି ନାହିଁ । ସୁତରାଂ ଆମ୍ଭମାନଙ୍କ ଏ ସଭାରେ ଆଜି ଏତେ ଅଳ୍ପ ଲୋକ ଉପସ୍ଥିତ ; କିନ୍ତୁ ଦିନ ଆସିବ, ଯେତେବେଳେ ଆମ୍ଭମାନଙ୍କ ଏ ସଭାର ପ୍ରତିଷ୍ଠାତା ମାନନୀୟ ମଦନବାବୁ, ଏହି ସଭାର ପ୍ରଥମ ସୂତ୍ର-ପାତ କରିଥିବା ହେତୁ, ଅମର ନାମ ଅର୍ଜନ କରିବେ । ତାଙ୍କର ପୁଣ୍ୟ ନାମ ପୃଥିବୀର ବଡ଼ଲୋକମାନଙ୍କ ନାମ ସଙ୍ଗେ କୀର୍ତ୍ତିତ ହେବ ।"

ବୀରେନ୍ଦ୍ରଙ୍କର ଏ କଥାଗୁଡ଼ିକ ମନେପଡ଼ିବାରୁ ମଦନ ବାବୁଙ୍କ ମନରେ ସମ୍ମୁଖରେ ବସିଥିବା ଯୁବକ ପ୍ରତି ସ୍ନେହର ମାତ୍ରା ବହୁଗୁଣ ବଢ଼ିଗଲା । ବାସ୍ତବିକ୍ ବୀରେନ୍ଦ୍ର ଯେପରି ଲୋକ ଚିହ୍ନିପାରେ, ସେପରି ଆଉ କିଏ ଚିହ୍ନିବ ? ବୀରେନ୍ଦ୍ରଙ୍କର କୌଣସି ପ୍ରକାର ଉପକାର କରିପାରିଲେ ବଡ଼ ଭଲ ହୁଅନ୍ତା—ତାଙ୍କର ଆଜିକାର ଭାବ ଦୃଢ଼ ହୋଇ ସବୁଦିନେ ରହନ୍ତା ।

ତା'ପରେ—ତା'ପରେ ଗୁରୁବାବୁଙ୍କ ସମ୍ପତ୍ତିର ବର୍ତ୍ତମାନ ଏକମାତ୍ର ମାଲିକ ବୀରେନ୍ଦ୍ରଙ୍କ ମୂଲ୍ୟ କନ୍ୟାପିତାମାନଙ୍କ ଆଗରେ ବଡ଼ କମ୍ ନୁହେ । ବୀରେନ୍ଦ୍ରଙ୍କୁ ଜାମାତା କରି ପାଇଲେ ତାଙ୍କୁ ଅନୁଗତର ଯଥାଯୋଗ୍ୟ ପୁରସ୍କାର ମିଳିବ ଏବଂ ସଙ୍ଗେ ସଙ୍ଗେ କଣ୍ଟକର ଦୁଇଟା ବଡ଼ ସମ୍ପତ୍ତି ଏକତ୍ରିତ ହୋଇଯିବ । ବୀରେନ୍ଦ୍ରଙ୍କ ଶ୍ୱଶୁର ବୋଲି ତାଙ୍କର ଖାତିର ଯେତେ ବଢ଼ିବ, ବୀରେନ୍ଦ୍ର ତାଙ୍କ ଜ୍ୱାଇଁ ରୂପେ ମଧ୍ୟ ସମସ୍ତଙ୍କ-ଠାରୁ ସେତିକି ସମ୍ମାନ ପାଇବେ । ଗୋପାଳର ଧୃଷ୍ଟତା ମନେ ପଡ଼ିଗଲା । ମଦନବାବୁ ହସି ହସି କହିଲେ, "ବୀରେନ୍ଦ୍ର, ତମେ ଏତେ ପରିଶ୍ରମ କାହିଁକି କରୁଛ, ବାବା ! କନକ ଏକୁଟିଆ କଣ କରୁଛି, ଗଲ ଦେଖିବ !"

ବୀରେନ୍ଦ୍ର ହର୍ଷୋଲ୍ଲାସରେ 'ଗୁଣ୍ଡକର ଦମନ ସଭା'ର କାଗଜ-ପତ୍ର ଗୋଟିଆଗୋଟିଇ କରି ଫାଇଲରେ ବାନ୍ଧୁ ବାନ୍ଧୁ କହିଲେ, "ଆଜ୍ଞା, ପ୍ରଥମାବସ୍ଥାରେ ଟିକିଏ ନ ଖଟିଲେ ସଭାର କାର୍ଯ୍ୟରେ ଶୃଙ୍ଖଳା ହେବ ନାହିଁ । ଥରେ ଚାଲୁ କରିଦେଲା ପରେ ବେଶ୍ ଫୁରସତ୍ ମିଳିବ ଯେ ।"

ବୀରେନ୍ଦ୍ର ଏତିକି କହି କାଗଜପତ୍ର, ଚରିବରରେ ଯେପରି ସଜଡ଼ା ହୋଇପାରେ ସେପରି ଥୋଇ କନକ ପାଖକୁ ବାହାରିଲେ । ତାଙ୍କର ତପସ୍ୟା ପୂର୍ଣ୍ଣ ହେଲା । ସେ ଦେଉଁ ଉଦ୍ଦେଶ୍ୟରେ ବୃଦ୍ଧ

ଆଉ଼ପାଗଲ ମଦନବାବୁଙ୍କ ଖିଆଲ ଆଗରେ ନତମସ୍ତକ ହୋଇଥିଲେ, ତା'ର ପୁରସ୍କାର ଆଜ ମିଳଲା । ବୀରେନ୍ଦ୍ର ମନୁଷ୍ୟ ଚରିତ୍ର ଚହ୍ନି-ବାରେ ବେଶ୍ ଅଭ୍ୟସ୍ତ ; କିଏ କେଉଁ ଉପାୟରେ ବଶ ହେବ ସେକଥା ସେ ଜାଣନ୍ତି ଏବଂ ପ୍ରଥମ ଯୌବନରୁ ଆଜଯାଏ ସେ ନାନା ଉପାୟରେ କେତେ ଯେ ନାରୀ ହୃଦୟ ଆକ୍ରମଣ କରି ଜିଣିଛନ୍ତି ତା'ର ସୁମାରି କରିବାର ପ୍ରୟୋଜନ ନାହିଁ । ପୁରୁଷ ହୃଦୟରେ ନିଜର ଶକ୍ତି ପ୍ରୟୋଗ କରିବା ତାଙ୍କର ଏହା ପ୍ରଥମ । କନକ ଉପରେ ମଦନବାବୁଙ୍କର କି ପ୍ରଭାବ ବୁଝିବା ସଙ୍ଗେ ସଙ୍ଗେ ସେ ମଦନ ବାବୁଙ୍କ ପ୍ରତି ଦୃଷ୍ଟି ପକାଇଲେ ଏବଂ ମଦନବାବୁଙ୍କ ହୃଦୟ-ଦୁର୍ଗର ଦୁର୍ବଳ ଅଂଶ ଚହ୍ନିଯାଇ ସେ ସେହି ବାଟେ ନିଜର ପ୍ରଭାବ ମଦନବାବୁଙ୍କ ହୃଦୟ ଉପରେ ପକାଇବାକୁ ଲଗିଲେ । ତାଙ୍କର ନିଜ ଶକ୍ତି ଉପରେ ବିଶ୍ୱାସ ଥିଲା । ସେ ଆଗରୁ ବୁଝିଥିଲେ, ମଦନବାବୁ ଦିନେ ନିଶ୍ଚୟ ଜାଲରେ ପଡ଼ିଯିବେ । କିନ୍ତୁ ଏତେ ଶୀଘ୍ର ? ଏତେ ଶୀଘ୍ର ତାଙ୍କ ଚେଷ୍ଟା ଫଳବତୀ ହେବ ବୋଲି ତାଙ୍କର ଆଶା ନ ଥିଲା । ଭାଗ୍ୟର କଥା, ମଦନ ବାବୁ କନକ ସଙ୍ଗେ ତାଙ୍କୁ ଆନନ୍ଦରେ ଛୁଡ଼ିଦେବାକୁ ତାଙ୍କର ରାଜି ଜଣାଇଦେଲେ । ଏଥର କନକର ହୃଦୟ ଜିଣିବାକୁ ହେବ । ଜିଣି ତ ହେବ ନିଶ୍ଚୟ । ତେବେ ନ ହେଲେ ଚନ୍ତା ନାହିଁ । ମଦନବାବୁଙ୍କ ଆଗେ କନକ ଯେ ନିଜର ନିଜତ୍ୱ ପ୍ରକାଶ କରିବ, ଏ କଥା ତ ଆଦୌ ସମ୍ଭବ ନୁହେ ।

ଉପନ୍ୟାସକାରମାନେ ଯେଉଁ ପବିତ୍ର ପ୍ରେମ—ଆତ୍ମା ସଙ୍ଗେ ଆତ୍ମାର ମିଳନର ଉଲ୍ଲେଖ କରନ୍ତି—ସେ ପ୍ରେମ ବୀରେନ୍ଦ୍ରଙ୍କ ହୃଦ-ୟରେ ବିଶେଷ ଭାବାନ୍ତର ଆଣିପାରେ ନାହିଁ, ତାଙ୍କ ପ୍ରେମରେ ଆଧ୍ୟାତ୍ମିକତାର ସ୍ଥାନ ନାହିଁ । ନାରୀ ତାଙ୍କର ସମ୍ଭୋଗର ସାମଗ୍ରୀ । ସବୁ ନାରୀଙ୍କ ପ୍ରତି ତାଙ୍କ ପ୍ରେମର, ରୂପ ଓ ଛଟା ଭେଦରେ ପରିମାଣ

ଟିକିଏ ଇତର ବିଶେଷ ହୁଏ ; ମାତ୍ର କୌଣସିଠାରେ ସୁନ୍ଦରୀ ଯୁବତୀ ଦେଖିଲେ ସେ ଉତଳା ହୋଇପଡ଼ନ୍ତି ଏବଂ କଳେ ବଳେ କୌଶଳେ ନିଜର ସାଧ୍ୟାନୁସାରେ ତାକୁ ନିଜର ଭୋଗବସ୍ତୁରୂପେ ପାଇବାକୁ ଚେଷ୍ଟା କରନ୍ତି । ଏ ଲମ୍ପଟତା ଫଳରେ ତାଙ୍କୁ ଅନେକ ଥର ବିପନ୍ନ ହେବାକୁ ପଡ଼ିଥିଲା ଏବଂ ବିପଦରୁ ଉଦ୍ଧାର ପାଇବାକୁ ଯାଇ ନିଜର ପ୍ରଭୁତ ସମ୍ପତ୍ତି ଦେଖାଇ ପ୍ରଚୁର ଧାର ଉଧାର ନାନା ସ୍ଥାନରୁ କରିବାକୁ ହୋଇଥିଲା । ଲମ୍ପଟତା ବହୁ ବାଧା ବିଘ୍ନ ସତ୍ତ୍ୱେ ବଢ଼ିଛି ଏବଂ ତହିଁ ସଙ୍ଗେ ସଙ୍ଗେ ଋଣଜାଲ ତାଙ୍କୁ ଘେରିଇ ସାରିଦେବାର ଉପକ୍ରମ କରିବା ଉପରେ ।

ଏହି ସମୟରେ କନକଙ୍କର ନବ ଯୌବନ ଉପରେ ତାଙ୍କର ଦୃଷ୍ଟି ପଡ଼ିଗଲା । ଦୃଷ୍ଟି ପଡ଼ିବା ସଙ୍ଗେ ସଙ୍ଗେ ଲାଳସା ହେଲା ଏବଂ ଲାଳସା ପଛକୁ ମନେ ହେଲା ଏଠାରେ ତ ଦୁଇଟା ଉଦ୍ଦେଶ୍ୟ ସାଧିତ ହୋଇପାରିବ । କନକଙ୍କୁ ଖାଲି ପାଲରେ ପକାଇବାର ଚେଷ୍ଟା ନ କରି ହାତଗଣ୍ଠିର ଉଦ୍ୟମରେ ରହିଲେ ସ୍ତ୍ରୀରତ୍ନ ଲାଭ ହେବ ଏବଂ ଯୌତୁକ ସ୍ୱରୂପ ମଦନ ବାବୁଙ୍କ ବିଜସମ୍ପତ୍ତିଟା ମିଳିଯିବ, କରଜ ଶୁଝିହୋଇଯିବ ଏବଂ ଦରକାର ପଡ଼ିଲେ ନୂଆ କରଜ କରିବାର ବାଟ ମଧ୍ୟ ସଫା ହୋଇଯିବ । ଏହି ଚିନ୍ତାରେ ବୀରେନ୍ଦ୍ର ତାଙ୍କ ଚତୁରତା ଅସ୍ତ୍ରରେ ସଂପୂର୍ଣ୍ଣ ସଜ୍ଜିତ ହୋଇ ଯୁଦ୍ଧରେ ମଦନ ବାବୁଙ୍କ ହୃଦୟ ଜୟ କରିବାକୁ ବାହାରିଥିଲେ । ଜୟ ବଡ଼ ସହଜରେ ହେଲା । ଏହି ବିଜୟଗର୍ବରେ ସରସ ଚେହେରା ଧରି ସେ କନକଙ୍କ ପଢ଼ା ଘରେ ଯାଇ ପହଞ୍ଚିଲେ ।

ବୀରେନ୍ଦ୍ରଙ୍କ ଅଜ୍ଞାତ ବେଗ ହେତୁ କନକଙ୍କ ନାରୀହୃଦୟ ତାଙ୍କ ପ୍ରତି ବଡ଼ ସଦୟ ହୋଇଥିଲା । ସେହି ଦିନୁ ବୀରେନ୍ଦ୍ରଙ୍କ ସଙ୍ଗେ ତାଙ୍କର ଯେତେ ଦେଖା ହୋଇଥିଲା, ସବୁବେଳେ ଦେହ

ବିଷୟ୍ୱରେ ପ୍ରଶ୍ନ କରି କରି କନକ ତାଙ୍କୁ ବ୍ୟସ୍ତ କରି ଦେଉଥିଲେ । ଆଜି ମୁହଁରେ ସରସ ଭାବ ଦେଖି ହସି ହସି ସେ ପଚାରିଲେ, "ବୀରଭାଇ, ବାପା ଆଜି କ'ଣ ଟିକିଏ ଭଲ ଜଣାଯାଉଛନ୍ତି ?"

ବୀରେନ୍ଦ୍ର—ହଁ, ଆଜି ରୋଗର ଅନେକ ଉପଶମ ହୋଇଛି । ଆଜି ଜଣେ ଭଲ ଡାକ୍ତରଙ୍କ ପାଖକୁ ଯାଇଥିଲି । ସେ ଗୋଟାଏ ଔଷଧ ଦେଇଛନ୍ତି । ତା'ର ଫଳ ନିଶ୍ଚୟ ଭଲ ହେବ ।

କନକ—ସେ ଡାକ୍ତର କିଏ ? ତାଙ୍କ ପାଖକୁ ଏଥି ପୂର୍ବରୁ ଯାଇଥିଲେ ତ ବଡ଼ ଭଲ ହୋଇଥାନ୍ତା ।

ବୀରେନ୍ଦ୍ର—ଡାକ୍ତରଙ୍କ ଅନୁସରଣରେ ଅନେକ ଦିନୁ ଥିଲି । ଆଜି ସେ ଔଷଧର ବ୍ୟବସ୍ଥା କରିଛନ୍ତି ।

କନକ—ଯାନକରେ ଯଦି ଏତେ ଭଲ ଫଳ ଜଣାଯାଉଛି, ନିଶ୍ଚୟ ଏଥିରେ ରୋଗ ଦୂର ହେବ । ଈଶ୍ୱର କରନ୍ତୁ, ତୁମେ କପରି ରୋଗମୁକ୍ତ ହୁଅ । ମୁଁ ତୁମ ପାଇଁ ବଡ଼ ଚିନ୍ତିତ ଥିଲି ।

ବୀରେନ୍ଦ୍ରଙ୍କ ସରସତା ଆହୁରି ବଢ଼ିଗଲା । ସେ ତୁନି ତୁନି ହୋଇ କହିଲେ, "ମୋ ପାଇଁ ତମେ ଏତେ ଚିନ୍ତିତ କାହିଁକି କନକ ? ମୁଁ ତ ବିଚାରରେ ମୋର କ୍ଷତିବୃଦ୍ଧିରେ କାହାର କିଛି ଯାଏ ଆସେ ନାହିଁ ।" କନକ ହସି ହସି ଥଟ୍ଟାରେ ଉତ୍ତର ଦେଲେ, "ବାଃ, ତମେ ଆଜିକାଲି ଭାରି ଉଦାସୀନ ହୋଇଯାଉଛ ତ ?"

ବୀରେନ୍ଦ୍ର ଗୋଟିଏ ଦୀର୍ଘନିଃଶ୍ୱାସ ପକାଇ କ୍ଷଣେ ତୁନି ରହିବା ପରେ କହିଲେ, "ଆଚ୍ଛା କନକ, ମୋ ବିଷୟ୍ୱ ତୁମେ କଣ ବାସ୍ତବିକ୍ ବିଚାର ?"

କନକ—ବା, ତୁମ ସଙ୍ଗେ ପିଲାଦିନୁ ପରିଚିତ । ମୁଁ ଇମିତି କଣ ହୋଇଗଲିଣି ଯେ, ତୁମ ଦୁଃଖରେ ଟିକିଏ ସମବେଦନା ଅନୁଭବ ବି କରିପାରିବି ନାହିଁ ?

"ତେବେ ମୁଁ ଯେତେ ହତଭାଗା ବୋଲି ନିଜକୁ ବିଶ୍ବରେ ତେତେ ନୁହେ" ବୋଲି କହି ବୀରେନ୍ଦ୍ର ହସି ହସି କନକ ଧରିଥିବା ବହିଖଣ୍ଡି ତାଙ୍କ ହାତରୁ କାଢ଼ିନେଇ ଦେଖିବାକୁ ଲାଗିଲେ । ବୀରେନ୍ଦ୍ର ସେ ବହିର ଗୋଟିଏ ପୃଷ୍ଠାକୁ ଚାହିଁ ଚାହିଁ ଅନେକ ସମୟ କଟାଇଲା ପରେ କନକ କହିଲେ, "ବୀର ଭାଇ, ଯାଅ, ଗାଧୋଇବ—ବହୁତ ଡେରି ହୋଇଗଲାଣି ।"

ଅନେକ ବେଳରୁ ଯିବାକୁ ଇଚ୍ଛା କରୁଥିଲେହେଁ, କେବଳ ଉଦ୍ଦେଶ୍ୟ ସାଧନରେ ବ୍ୟାଘାତ ଘଟିପାରେ ବୋଲି ଆଶଙ୍କା କରି ବୀରେନ୍ଦ୍ର ଏତେ ବେଳଯାଏ ବସିଥିଲେ । ବର୍ତ୍ତମାନ କହିବାରୁ ଅନିଚ୍ଛାର ବାହାନା କରି ସେ ଚଉକିରୁ ଉଠିଲେ ।

## ଆଠ

ବୀରେନ୍ଦ୍ର ଯିବା ପରେ କନକ ନିଜର ଖାଇବା ପିଇବା କାର୍ଯ୍ୟ ସାରି ଟିକିଏ ବିଶ୍ରାମ କରିବାକୁ ଗଲାବେଳକୁ ଉଦୁଉଦିଆ ଦିପହର ସମୟ । ବିଶ୍ରାମ ସମୟ ଟିକକ କେତେଦିନ ହେଲା ଭାରି କଷ୍ଟକର ହୋଇଯାଇଥିଲା । ପଢ଼ାପଢ଼ି ବେଳଟା ଯେକୌଣସିମତେ କଟିଯାଏ । ପଢ଼ାପଢ଼ି ବେଳେ କେତେ ଆଡ଼ୁ କେତେ କଥା ଆସି ମନେ ପଡ଼ଯାଏ ସତ, ତେବେ ପରୀକ୍ଷାରୂପ ଆସନ୍ନ ବିପଦ ସଦାସର୍ବଦା ମନେଥିବାରୁ କନକ ସେଥି ନିମନ୍ତେ ଆତ୍ମରକ୍ଷାର ବାଟ ପରିଷ୍କାର କରିବା ଉଦ୍ଦେଶ୍ୟରେ ଅନିଚ୍ଛୁକ ମନକୁ ଟାଣି ଓଟାରି ବହିରେ ନେଇ ଲଗାନ୍ତି । କେହି ବନ୍ଧୁ ଆସି ପହଞ୍ଚିଗଲେ କଥା ଲହସରେ ସମୟଟା କଟିଯାଏ ; ମାତ୍ର ବିଶ୍ରାମ ସମୟଟା ଚିନ୍ତା କରିବାର ଧରାବନ୍ଧା ଅବସର । ଖଟ ଉପରେ ଓପରକୁ ଗୁହିଁ ପଡ଼ଗଲା ମାତ୍ରେ ଗୋପାଳଙ୍କ କଥା ଆସି

ସବୁଦିନ ଭଳି ମନକୁ ଅଧିକାର କରି ବସିଲା । ସେ କୁଆଡ଼େ ଗୁଳି-ଗଲେ ? ତାଙ୍କର ଏଡ଼େ ହତାଦର ! ସେ ପରି ଭରି ହୃଦୟ ଚିହ୍ନି ପାରନ୍ତି ବୋଲି ଗର୍ବ କରନ୍ତି । କନକର ହୃଦୟଟା ଟିକିଏ ଜାଣିପାରିଲେ ନାହିଁ ? କାଗଜରେ ସେ ଯେଉଁ କଥାଟା ସେଦିନ ଲେଖିଦେଇଥିଲେ, ସେତିକରେ ତାକୁ ଏକାବେଳକେ ତ୍ୟାଗ କଲେ ! ଟିକିଏ ବୁଝିପାରିଲେ ନାହିଁ, ସେ ଚିଠିଟାଯାକ ସବୁ ମିଛ । ଚିଠି ଲେଖିଲାବେଳେ ତା'ର ଥରଥର ହାତରୁ ହୃଦୟର ଭାବଟା ଜାଣିବା ତ ସହଜ ହୋଇଥାନ୍ତା ! ତା'ର ମୁହଁକୁ ଦେଖି ମୁହଁରେ ହୃଦୟର ଭାବ ଅଙ୍କିତ ହେବାର ଜାଣିପାରିଲେ ନାହିଁ ? ଯଦି ବା ଜାଣି ନ ପାରିଲେ, ଆଉ ଥରେ ଆସନ୍ତେ ନାହିଁ ! ଯଦି ସେ ପ୍ରକୃତରେ ସ୍ନେହ କରୁଥାନ୍ତେ, ତାହାହେଲେ ଏପରି ଟିକିକ କଥାରେ କେବେ ଛାଡ଼ି ରହିପାରନ୍ତେ କି ? ତା'ର ହୃଦୟର ଭାବ ବଦଳାଇବା ନିମନ୍ତେ ଆଉ ଚେଷ୍ଟା କରିନଥାନ୍ତେ କି ? କନକଙ୍କ ହୃଦୟ ଅଭିମାନରେ ପୂର୍ଣ୍ଣ ହୋଇଗଲା । ସେ ପଣତକାନିରେ ଆଖି ଦୁଇଟିକୁ ବାରମ୍ବାର ପୋଛିଲେ ।

କାନ୍ଦି କାନ୍ଦି ମନ ଟିକିଏ ସ୍ଥିର ହେଲା । କନକ ମନେ ମନେ କହିଲେ, "ସେ ଆଉ ଆସିଥିଲେ ବା କି ଫଳ ହୋଇଥାନ୍ତା ? ବାପା ତ କେବେ ତାଙ୍କର ମନୋବାଞ୍ଛା ପୂର୍ଣ୍ଣ କରାଇଦିଅନ୍ତେ ନାହିଁ । ବୃଥାରେ ଅପମାନ ପାଇଥାନ୍ତେ ସିନା !" ମୂଢ଼ା କନକ ! ବରଂ ଭାବୁଛ ସେ ଅପମାନ ପାଇନାହାନ୍ତି ପରା ! ତୁମେ ତାଙ୍କ ହୃଦୟରେ ଯେଉଁ ନିଆଁ ସେ ଚିଠିରେ ଲଗାଇଦେଲ, ତହିଁରେ ତୁମ ବାପା ଯେ ଆହୁତି ଦେବାରେ ଅବହେଳା କରିନାହାନ୍ତି, ତାହା ତୁମର ଆଜପର୍ଯ୍ୟନ୍ତ ଗୋଚରକୁ ଆସି ନାହିଁ ପରା !

ବିଚଳିତ ମନର ସାନ୍ତ୍ୱନା ନିମନ୍ତେ କନକ ବଗିଚାକୁ ଆସି ଗୋଲାପଜାମୁଗଛ ମୂଳରେ ଥିବା ଚଉକି ଉପରେ ବସିପଡ଼ିଲେ । ଗଛମୂଳର ଚାରିପାଖେ ପଡ଼ିଥିବା ଉଦୁଉଦିଆ ଦି'ପହର ଖରା ଗଛ ମୂଳକୁ ଭ୍ରୁକୁଟି ଦେଖାଉଥାଏ । କନକଙ୍କ ଆଡ଼କୁ ଚାରି ଦିଗରୁ ତାପ ରୂପ ହାତ ବଢ଼ାଉଥାଏ, କହୁଥାଏ, "ତୋର ହୃଦୟର ଅବସ୍ଥା ଯେପରି, ତୁ ମୋର କୋଳରେହିଁ ଆଶ୍ରୟ ପାଇବାର ଯୋଗ୍ୟ । ହୃଦୟରେ ଯଦି ଏତେ ତାପ, ଛାର ମାଟିର ଆବରଣଟାକୁ ଥଣ୍ଡା ରଖିବାକୁ ଚେଷ୍ଟା କରୁଛୁ କାହିଁକି ?"

ଗଛମୂଳରେ ସାନ୍ତ୍ୱନା ପାଇବାର ଚେଷ୍ଟା ବୃଥା ହେବାର ଦେଖି କନକ ପୁଣି ଘର ଭିତରକୁ ଯାଉଛନ୍ତି, ତାଙ୍କ ଦୃଷ୍ଟି ଆଉ ଗୋଟିଏ ଦୃଶ୍ୟ ଆଡ଼କୁ ଆକୃଷ୍ଟ ହୋଇଗଲା— ତାଙ୍କ ହରିଣ ଛୁଆକୁ ତାଙ୍କ କୁକୁର ମୋତି ଗୋଡ଼ାଉଛି । ଦୌଡ଼ ହୋଇଛି, ଘରକୁ ଘେରି ରହିଥିବା ବଗିଚାର ଛୋଟ ରାସ୍ତାଟି । ଘର ଚାରିପାଖେ ପ୍ରାଣୀ ଦୁଇଟିକୁ ଦୌଡ଼ି ଆସିବାକୁ ପ୍ରାୟ ଦୁଇ ମିନିଟ୍ ଲାଗୁଥାଏ । ଦୁଇ ମିନିଟ୍‌ରେ ଥରେ ଲେଖାଏଁ ତାଙ୍କ ପାଖଦେଇ ଯୋଡ଼ିକଯାକ ଧାଇଁଯାଉଥାନ୍ତି, ହରିଣ ଛୁଆଟି ଆଗରେ, ମୋତି ପଛରେ—ମୋତିର ଗୋଜିଆ ମୁହଁଟି ହରିଣ ଛୁଆର ପଛଗୋଡ଼ ଯୋଡ଼ିକର ପ୍ରାୟ ଚାଖଣ୍ଡେ ଦୂରରେ । କନକଙ୍କର ସମସ୍ତ ଚିନ୍ତା ଦୂର ହୋଇଗଲା । ସେ ଏ କୌତୁକ ଦେଖିବାକୁ ଲାଗିଲେ । ଘର ଚାରିପାଖେ ପ୍ରାୟ କୋଡ଼ିଏ ଥର ପରିକ୍ରମା ସରିଲାଣି । ଛୁଆ ଯୋଡ଼ିକ ଠିକ୍ ଅଦୃଶ୍ୟ ହୋଇଛନ୍ତି, ଆଉ ମିନିଟ୍‌କ ବାଦ୍ ପୁଣି ଦେଖାଯିବେ । କନକ ନିର୍ନିମେଷ ଦୃଷ୍ଟିରେ ତାଙ୍କୁ ଅପେକ୍ଷା କରି ରହିଛନ୍ତି । ମିନିଟେ ଗଲା, ଦୁଇ ମିନିଟ୍—ତିନି ମିନିଟ୍—ପାଞ୍ଚ ମିନିଟ୍ ପରେ ଆଉ କନକ ସ୍ଥିର ହୋଇ ରହି- ପାରିଲେ ନାହିଁ । ଘରର ଚାରିପଟେ ଯାଇ ସେମାନଙ୍କୁ ଖୋଜି ଖୋଜି

ଗୁଳକର ବନୁଆ କହିଲା, "ହଁଜ, ମୋର ଫାଟକଟା ବନ୍ଦ କରିବାକୁ ମନେ ହେଲା ନାହିଁ। ଇଲଟେଗ କୁକୁର ଗୋଡ଼ାଇଲା ଯେ ହରିଣଛୁଆଟି ଫାଟକବାଟେ ଦାଣ୍ଡକୁ ପଳେଇଗଲା। ମୁଁ ତା' ପଛରେ ଖୁବ୍ ବାଟ ଗଲି, ଆଉ ଗୋଡ଼େଇପାରିଲି ନାହିଁ, ସେ କେଉଁଆଡ଼େ ଯାଇଚି-ଭାରି।"

କନକ—ମୁଁ ତ ହରିଣଛୁଆ କୁଆଡ଼େ ଗଲା ପଚାରୁଛି, ତୁ ଫାଟକ ଦୁଆର କମିତି ମେଲା ହେଲା କହୁଚୁ କାହିଁକି ? ବାପା ଏତକ ଶୁଣିଲେ ମାଡ଼େ କାମରୁ ଛଡ଼ାଇଦେବେ ଯେ।

କଥା ମୁହଁରୁ ନ ସରୁଣୁ ମଦନବାବୁ କୁଆଡ଼ୁ ଆସି ସେଇଠାରେ ପହଞ୍ଚିଲେ। ସେ ବୁଝିଗଲେ, କଣ ଗୋଟାଏ ଘଟିଛି। କନକ ତାଙ୍କ ପ୍ରଶ୍ନକୁ ଅପେକ୍ଷା ନ କରି କହିଲେ, "ବାପା, ହରିଣଛୁଆଟା କୁଆଡ଼େ ଦାଣ୍ଡକୁ ପଳେଇଛି।"

ମଦନବାବୁ ବିରକ୍ତ ହୋଇ ପାଟିକଲେ, "ହରିଣଛୁଆ ହଜିଲା ବେଳକୁ 'ବାପା, ହରିଣଛୁଆ ହଜିଛି।' ଗୁଳକରବାକରଗୁଡ଼ାକ ଉପରେ ଟିକିଏ ନଜର ଦେବାକୁ ନାହିଁ। କରେ ବନୁଆ, ଫାଟକ ଦୁଆର ମେଲା କଲା କିଏ ?"

ବାବୁଙ୍କ ଗର୍ଜନ ଶୁଣି ବନୁଆ ନିଜର ଦୋଷ ସ୍ୱୀକାର କରିବା ଉଦ୍ଦେଶ୍ୟରେ "ବାବୁ, ମୋର ମନେ ପଡ଼ିଲା ନାହିଁ" ବୋଲି କହିବାକୁ ଯାଇ ଖାଲି 'ବାବୁ' କହୁ କହୁ ମଦନବାବୁ ସମ୍ଭାଳି ନ ପାରି ଗର୍ଜିଉଠିଲେ "ଏ ଗୁଳକରଗୁଡ଼ାକ ସମସ୍ତେ ସମାନ। ଏହିକ୍ଷଣି ହଜାରେ ଆଳ ବାହାର କରିବ। ମୁଁ ଇଆଡ଼େ ଯାଇଥିଲି, ସିଆଡ଼େ ଯାଇଥିଲି ଇତ୍ୟାଦି। ରଖ୍, ତୋ ବାବୁ ବାବୁ। ଗଲୁ ଯା ବୀରେନ୍ଦ୍ରକୁ ଡାକିଦେଲୁ।"

ମଦନବାବୁ ଘର ଭିତରକୁ ଗଲେ । ବନୁଆ ବାବୁଙ୍କ ଆଖି ଆଗରୁ ଅନ୍ତତଃ ପାଞ୍ଚମିନଟ୍ ବାହାରିଯିବାର ସୁବିଧା ପାଇ ଆନନ୍ଦରେ ଖଗେନ୍ଦ୍ରଙ୍କ ଘରକୁ ଧାଇଁଲା । କନକ ବାପାଙ୍କ ଅଧୀରତା ଯୋଗୁଁ ବନୁଆ ରକ୍ଷାପାଇବାରେ ଖୁସିହୋଇ ମୁରୁକ ମୁରୁକ ହସି ଠିଆ ହୋଇ ରହିଲେ । ହରିଣ ଛୁଆ ବିଷୟରେ ଏସବୁ ଭିତରେ ଟିକିଏ ଚିନ୍ତା ବି ଥାଏ ।

ଖଗେନ୍ଦ୍ର ବନୁଆ ମୁହଁରୁ ମଦନବାବୁ ଡକେଇ ପଠେଇବାର କାରଣଟା ବୁଝିନେଇ, କନକର ହଜିଯାଇଥିବା ହରିଣଛୁଆଟି ଖୋଜିଆଣିବାର ସୁବିଧା ପାଇବା ଭାଗ୍ୟର କଥା ବୋଲି ବିଚାରି, ତରବରରେ ଖଣ୍ଡେ କାମିଜ ଗଳେଇପକେଇ ଆସିଲେ ।

ଫାଟକ ପାଖରେ କନକଙ୍କୁ ଦେଖି ଖଗେନ୍ଦ୍ର ଆଶା ଦେଇ କହିଲେ, "ହରିଣଛୁଆ ପାଇଁ ମନ ମାରିଦେଇଛ ପରି ! କିଛି ଚିନ୍ତା ନାହିଁ । କଟକର ଯେଉଁ ସ୍ଥାନରେ ଥିବ ସେଠାରୁ ଆଜି ବାହାର କରି ଆଣିବି । ମୁଁ ଥାଉଁ ଥାଉଁ ତୁମ ପ୍ରିୟ ଛୁଆଟି ହଜିଯିବ ନାହିଁ ।"

କନକ ଈଷତ୍ ଲଜ୍ଜାରେ, "ନା, ସେଇଟା ସେପରି କିଛି ପ୍ରିୟ ନୁହେଁ—ତୁମେ କାହିଁକି ଗୁଡ଼ାଏ କଷ୍ଟ ପାଇବ" ବୋଲି କହି, ଘରଭିତରୁ ସାଇକଲଟା ଆଣିବାକୁ ଗଲେ, ଏବଂ ଖଗେନ୍ଦ୍ର ମଦନ-ବାବୁଙ୍କୁ ଖାଲି ଦେଖାଟାଏ ଦେଇ ଦେଇ ସାଇକଲ କନକ ବାହାର କରି ଆଣିବା ପୂର୍ବରୁ ବାହାରିଗଲେ ।

ଖଗେନ୍ଦ୍ର ନିଜ ଘରୁ ସାଇକଲ ନେଇ କଟେଶ୍ୱ ହତା ଭିତରକୁ ଗଲାବେଳକୁ ହରିଣ ଛୁଆଟି କଟେଶ୍ୱ ନିକଟସ୍ଥ ପଡ଼ିଆରେ ଠିଆ ହୋଇଛି । ଦି'ଅଣା ପଇସା ସାହାଯ୍ୟରେ ଛୁଆଟି ଧରାଗଲା ଏବଂ କଟେଶ୍ୱ ନିକଟରେ ଜଣେ ବନ୍ଧୁ ଘରେ ରଖାଗଲା । ଖଗେନ୍ଦ୍ରବାବୁ ସାଇକେଲ ଚଢ଼ି ମହାନଦୀକୂଳକୁ ଚାଲିଗଲେ । ସେ ସବୁଦିନ

କାଠଯୋଡ଼ୀ କୂଳରେ ବୁଲନ୍ତ । ମାତ୍ର କନକ ବି କାଠଯୋଡ଼ୀ କୂଳରେ ବୁଲନ୍ତ । ଆଜି କନକଙ୍କ ଆଖିରେ ପଡ଼ିଲେ ସବୁ ବିଗିଡ଼ି-ଯିବ, ଏଥିପାଇଁ ସେ ମହାନଦୀ କୂଳକୁ ପଳାଇଲେ ।

ପରଦିନ ସକାଳ ଆଠଟା ବେଳେ, ବୀରେନ୍ଦ୍ର ଗୋଟିଏ ଶିକୁଳିରେ ହରିଣ ଛୁଆଟିକୁ ବାନ୍ଧି ମଦନବାବୁଙ୍କ ଫାଟକ ପାଖେ ଆସି ଡାକିଲେ । କନକ ସନ୍ଧ୍ୟା ତମାମ ଓ ରାତି ନଅଟା ପର୍ଯ୍ୟନ୍ତ ବୀରେନ୍ଦ୍ରଙ୍କ ଅପେକ୍ଷାରେ ଥିଲେ । ବୀରେନ୍ଦ୍ର ନ ଆସିବାରୁ ତାଙ୍କ ମନ ହରିଣଛୁଆ ବିଷୟରେ ବିଶେଷତଃ ବୀରେନ୍ଦ୍ରଙ୍କ ବିଷୟରେ ଚିନ୍ତିତ ଥିଲା । ସକାଳୁ ଉଠି ମଧ୍ୟ ସେ ସେହି ଚିନ୍ତା କରୁଥିଲେ । ହଠାତ୍ ବୀରେନ୍ଦ୍ରଙ୍କ କଣ୍ଠସ୍ୱର ଶୁଣି ସେ ଚାକରଙ୍କ ଅପେକ୍ଷା ନ ରଖି ନିଜେ ଯାଇ ଫାଟକ ଦୁଆର ଫିଟାଇଦେଲେ ଏବଂ ବୀରେନ୍ଦ୍ରଙ୍କ ହାତରେ ହରିଣ ଛୁଆଟି ଦେଖି ହସି ହସି ପଚାରିଲେ, "ଏ ତୁମକୁ ଖୁବ୍ କଷ୍ଟ ଦେଲା, ବୀର ଭାଇ !"

ବୀରେନ୍ଦ୍ର—କଷ୍ଟ କ'ଣ ? ଅବଶ୍ୟ ଟିକିଏ ଖୋଜିବାକୁ ପଡ଼ିଲା, ମାତ୍ର ତୁମ ନିମନ୍ତେ ଆହୁରି ଅଧିକ କଷ୍ଟକୁ ମଧ୍ୟ ମୁଁ କଷ୍ଟ ବୋଲି ଗଣନ୍ତି ନାହିଁ । କାଲି ରାତିରେ ଆଉ ଟିକିଏ ଖୋଜିଥିଲେ ମିଳିଯାଇ-ଥାନ୍ତା ; ମାତ୍ର ଦଶଟା ପରେ ଆଉ କେଉଁଠାରେ ସନ୍ଧାନ ନ ପାଇ ଘରକୁ ଫେରିଥିଲି । ଯେଉଁଠାରେ କାଲି ଖୋଜା ବନ୍ଦ କରିଥିଲି, ସେହିଠାରୁ ଆଜି ଆରମ୍ଭ କଲି । ଘଣ୍ଟାକ ଭିତରେ ମିଳିଗଲା । ଛୁଆ ଖଣ୍ଡେ—ଘଣ୍ଟାକ ଭିତରେ ଯାଇ ବକ୍ସିବଜାର !

କନକ—ତେବେ ବିନୁଆ କଣ କହୁଥିଲା କଟେଣ୍ଟି ଆଡ଼େ ଯାଇଛି ବୋଲି ?

ବୀରେନ୍ଦ୍ର—ବିନୁଆ ଠିକ କହୁଛି । ପ୍ରଥମେ ସେ କଟେଣ୍ଟି ଆଡ଼େ ପଳେଇଥିଲା । ସେଠାରେ ଯୋଡ଼ାଏ ତିନିଟା କୁକୁର ତାକୁ

ଗୋଡ଼େଇଲେ ଯେ, ସେ ମହମହିଆ ବଜାର ବାଟେ କାଲପଡ଼ିଆ ହୋଇ ବକ୍‌ସିବଜାର ପର୍ଯ୍ୟନ୍ତ ଚାଲିଗଲା । ସେଠାରେ ଜଣେ ଲୋକ ତାକୁ ଧରି ରଖିଥିଲା ।

କନକଙ୍କ ଆଖିରୁ ବୀରେନ୍ଦ୍ରଙ୍କ ଅଧ୍ୟବସାୟ ନିମନ୍ତେ ପ୍ରଶଂସା ଫୁଟି ଦିଶିଲା । ସେ କହିଲେ, "ମୁଁ କାଲି ସାଇକଲ ଆଣୁ ଆଣୁ ତୁମେ ଚାଲିଗଲ ।"

ବୀରେନ୍ଦ୍ର—ସାଇକଲ ପାଇଁ କହିଥିଲି ସତ, ପୁଣି ବିଚାରିଲି ଚାଲିକରି ଯିବି । ଭଲ ହୋଇଚି, ସାଇକଲ ଚଢ଼ି ଖୋଜିବା କାମ ହୋଇପାରିନଥାନ୍ତା । ଛାଡ଼ ସେ ସବୁ କଥା, ମାଲ ତ ମିଳିଲାଣି । ସାଇକଲରେ ଗଲି କି ଚାଲି କରି ଗଲି ସେଥିରେ କ'ଣ ଅଛି ? ମୁଁ ଯାଉଛି ଟିକିଏ ବିଶ୍ରାମ କରିବି ।

ବିଶ୍ରାମ କରିବାକୁ ଆଗେ ନ କହି ଏତେ ବେଳଯାଏ କଥାବାର୍ତ୍ତାରେ ତାଙ୍କୁ ଅଟକାଇ ରଖିବା ହେତୁ ଲଜ୍ଜିତ ହୋଇ କନକ "ହଁ, ଯାଅ, ଯାଅ" ବୋଲି କହିଲେ । ବୀରେନ୍ଦ୍ର ତାଙ୍କ କହିବା ଅନୁସାରେ ବିଶ୍ରାମ କରିବାକୁ ଗଲେ ।

ବୀରେନ୍ଦ୍ର ଏହି ଛୋଟ ହରିଣଛୁଆ ବ୍ୟାପାର ନେଇ କନକଙ୍କ ହୃଦୟରେ ଗୋଟାଏ ଖୁବ ବଡ଼ ଆସନ ଅଧିକାର କରି ବସିଲେ । ବୀରେନ୍ଦ୍ର ବାସ୍ତବିକ ତାଙ୍କୁ କେତେ ସ୍ନେହ କରନ୍ତି ! ତାଙ୍କର ଘରର ଗୋଟାଏ ହରିଣଛୁଆ ପାଇଁ ଦୁଇଦିନ ଧରି ସେ କେତେ ପରିଶ୍ରମ କରିଛନ୍ତି ! ତାଙ୍କ ଦୁର୍ବଳ ଦେହରେ ସେ ଦ୍ୱାର ଦ୍ୱାର ବୁଲି ହରିଣ ଛୁଆର ସନ୍ଧାନ ନେବାର ଚିତ୍ର ମନେ ମନେ ଅଙ୍କନ କରି କନକ ବାରମ୍ବାର ବୀରେନ୍ଦ୍ରଙ୍କ ସ୍ନେହକୁ ଧନ୍ୟଧନ୍ୟ କଲେ । ଏ ସ୍ନେହ କାହିଁକି ? କିଛି ଦିନ ପୂର୍ବରେ ତ ବୀରେନ୍ଦ୍ର ଏପରି ନ ଥିଲେ । କନକଙ୍କ ସୁଗୋଲ ଗୋରା ମୁହଁଟି ଲଜ୍ଜାରେ ନାଲି ପଡ଼ିଗଲା ।

ଗୋପାଳ ମନେ ପଡ଼ିଗଲେ । କନକଙ୍କର ମନ ଭିତରେ କିଏ ଯେପରି କହିଲା, "ସୌରେନ୍ଦ୍ର ଓ ଗୋପାଳଙ୍କ ମଧ୍ୟରେ ତୁମକୁ କିଏ ବେଶି ସ୍ନେହ କରନ୍ତି, କନକ ? ଯେ ପଦେ କଥାକେ ତୁମକୁ ଛାଡ଼ି ଚାଲିଗଲା, ସେ ? ନା, ଯେ ତୁମଠାରୁ କିଛି ପ୍ରତ୍ୟାଶା ନ କରି ତୁମ ପାଇଁ ରାସ୍ତାରେ ଦ୍ୱାର ଦ୍ୱାର ବୁଲୁଛି ? ଯେ ତୁମକୁ ଗୋଡ଼ରେ ଫୋପାଡ଼ିଦେଲା ତାକୁ ହୃଦୟ ସିଂହାସନରେ ବସାଇଛ, ଆଉ ଯେ ତୁମ ପାଇଁ ଦିନ ନାହିଁ ରାତି ନାହିଁ ଖଟୁଛି, ତୁମର ଦୁଃଖ ଦୂର କରିବା ନିମନ୍ତେ ନିଜ ସୁବିଧା ଅସୁବିଧାକୁ ଭ୍ରୂକ୍ଷେପ କରୁନାହିଁ ତା' ବିଷୟରେ ଟିକିଏ ସୁଦ୍ଧା ଚିନ୍ତା କରୁନାହଁ !"

## ନଅ

ଠିକ୍ ସେଇଁ ଦିନ ସେତେବେଳେ ଏହିପରି ଚିନ୍ତାରେ କନକଙ୍କ ହୃଦୟ-ସିଂହାସନର ଅଧିକାର ନିମନ୍ତେ ସୌରେନ୍ଦ୍ର ଗୋପାଳଙ୍କର ପ୍ରତିଦ୍ୱନ୍ଦୀ ହେବାର ସୂତ୍ରପାତ ହେଲା, ସେହି ଦିନ ଠିକ୍ ସେତିକି ବେଳକୁ ଗୋପାଳ ତାଙ୍କ ନିର୍ଜନ କୋଠରୀରେ ବସି କ'ଣ ବିଚାରୁଛନ୍ତି ।

ବାସ ସ୍ଥାନଟି ଜଗୁଆର ଯତ୍ନରେ ତିଆରି ହୋଇଛି । ଦୁଇଟି ମୁଣ୍ଡିଆ ଦୁଇ ଦିଗରୁ ଆସି ମିଳିତ ହୋଇ ଗୋଟିଏ କୋଣ ଉତ୍ପାଦନ କରିଛି । ସେହି କୋଣରେ, ମାତ୍ର ମୁଣ୍ଡିଆ ଦୁଇଟିର ମିଳନ ସ୍ଥାନରୁ ପ୍ରାୟ ଅଧପାଏ ବାଟ ଦୂରରେ ଗୋପାଳଙ୍କ ଘରଟି । ଘର ବୋଲି ବିଶେଷ କିଛି ନୁହେଁ—ଗୋଟିଏ ମାତ୍ର କୋଠରୀ—ଅତି ବଡ଼ ନୁହେଁ କି ଅତି ଛୋଟ ନୁହେଁ । କୋଠରୀଟିର ଗୋଟିଏ କୋଣରେ ଖଣ୍ଡିଏ ଛୋଟ ଖଟିଆ ହୋଇଛି । ତା'ର ଭିତରେ ଗୋଟିଏ କିରାସିନ ଷ୍ଟୋଭ ଆଉ ଦୁଇ ଚାରି ଖଣ୍ଡି ଆଲୁମିନିଅମ ବାସନ ।

କୋଠରୀ ଭିତରେ ଗୋଟିଏ କୋଣରେ ଦୁଇ ଚୁଣ୍ଟି ବସ୍ତାରେ ଚାଉଳ ଡାଲି ରଖା ହୋଇଛି । ଅନ୍ୟ ଗୋଟିଏ କୋଣରେ ଖଣ୍ଡିଏ ଟେବୁଲ, ତା ପାଖକୁ ଖଣ୍ଡିଏ ଟିଣ ଚଉକି, ଆଉ କାନ୍ଥକୁ ଲାଗି ଗୋଟିଏ ଖୋଲା ଆଲମାରୀରେ ଗୁଡ଼ାଏ ବହିପତ୍ର । ଟେବୁଲଠାରୁ ପ୍ରାୟ ହାତେ ଦୁଇହାତ ଛାଡ଼ି ଖଣ୍ଡିଏ ସାଧା ଖଟ । ଖଟ ଉପରେ ଖଣ୍ଡିଏ ସତରଞ୍ଜି, ଆଉ ଖଣ୍ଡେ ତକିଆ ।

ଘରର ବାହାରେ, ଘର ଠାରୁ ଚାରି ହାତରେ ପ୍ରାୟ ଦୁଇଶହ ହାତ ଲେଖାଏଁ ଛାଡ଼ି ଗୋଟିଏ ବଡ଼ ପାଚେରି—ଖାଲି ପଥର ଡିମାରେ ତିଆରି । ଚକଟା ମାଟି ସିମେଣ୍ଟର କାର୍ଯ୍ୟ କରୁଛି । ଖୋର୍ଦ୍ଧାର ମାଟି ସ୍ୱଭାବତଃ ଭାରି ଟାଣ । ତହିଁରେ ପୁଣି ଡିମା ପଥର-ଗୁଡ଼ାକ ଦେଖି ମନେ ହେଉଛି, ପାଚେରି ଉପରେ ନଡ଼ାଛାତ ନ ଥିଲେ ମଧ୍ୟ ବର୍ଷା ତାହାର କିଛି କ୍ଷତି କରି ପାରନ୍ତା ନାହିଁ ।

ବାଡ଼ ଭିତରେ, ଘରର ଠିକ୍ ସମ୍ମୁଖରେ ଗୋଟିଏ ଛୋଟ ପୋଖରୀ । ପୋଖରୀରେ ଜଳ ଝରି ପଡ଼ୁଛି । ଖୁବ ପରିଷ୍କାର ପାଣି । ଜଗୁଆ ଓ ନଧିଆଙ୍କ ଯୋଗୁ ପୋଖରୀଟି ଛୋଟ ବଡ଼ ମାଛରେ ପୂର୍ଣ୍ଣ । ଗୋଟିଏ ମାତ୍ର ଶତ୍ରୁ ନ ଥିବାରୁ ମରିବାର ପାଳି ପଡ଼ିବ ନାହିଁ ବୋଲି ଆନନ୍ଦରେ ଖେଳୁଛନ୍ତି ।

ଘରର ଚାରିପଟେ ବାଡ଼ ଭିତରଯାକ ନାନା ପ୍ରକାର ଫସଲ ହୋଇଛି । କେଉଁଠାରେ ବାଇଗଣ କିଆରୀଟାଏ, କେଉଁଠାରେ କୋଶଲା ଶାଗ କିଆରୀ ଗୁଡ଼ାଏ, କେଉଁଠାରେ ଅବା ଗୁଡ଼ାଏ କନ୍ଦମୂଳ ମନ୍ଦା—ଏହିପରି ଆଉ କେତେ । ଦେଖିଲେ ଜଣାଯାଉଛି, ଘରର ମାଲିକ ନିଜର ସମସ୍ତ ଆବଶ୍ୟକ ଖାଦ୍ୟଦ୍ରବ୍ୟ ନିଜ ବାଡ଼ ଭିତରୁ ଆଦାୟ କରି ଖାଇବା ବିଷୟରେ ଅନ୍ତତଃ ପୂର୍ଣ୍ଣ ସ୍ୱାଧୀନ ହେବାର ଚେଷ୍ଟାରେ ଅଛନ୍ତି ।

ଗୋପାଳ ଟେବୁଲ ଉପରେ ଭର ଦେଇ ଚଉକିରେ ବସି-ଛନ୍ତି । ଏ ଗୋପାଳ ଆଉ କଷ୍ଟକର 'ଗୋପାଳ ବାବୁ' ନୁହନ୍ତି । ଗୋଟାଏ କିପରି ବଣୁଆ ହାବଭାବ ଦେହର ସମସ୍ତ ଅଂଶରେ ବ୍ୟାପି ରହିଛି । କଣ ଦାଢ଼ି ଗୁଡ଼ାକ ଖୁରର ଅଭାବରୁ ମୁହଁ ଉପରେ ଅନଧିକାର ଚର୍ଚ୍ଚା କରି ବସିଛନ୍ତି । କିନ୍ତୁ ସ୍ୱାସ୍ଥ୍ୟ ଖୁବ୍ ଭଲ ହୋଇଛି । ବାବୁରି ବାଳ ଓ ଅଯତ୍ନ ରକ୍ଷିତ ଦାଢ଼ି କଣ ଭିତରେ ଗୋଟାଏ କିପରି ଶ୍ରୀ ଫୁଟି ଉଠୁଛି । ଅନାବୃତ ସ୍କନ୍ଧ ଓ ବାହୁକୁ ଦେଖିଲେ ଜଣାଯାଉଛି, ଗୋପାଳଙ୍କ ସ୍ୱାଭାବିକ ବଳ ପରିଶ୍ରମ ଓ ମୁକ୍ତବାୟୁ ଯୋଗୁଁ ଉତ୍ତରୋତ୍ତର ବେଶ୍ ବୃଦ୍ଧି ପାଉଛି ।

ଟେବୁଲ ଉପରେ ଖଣ୍ଡିଏ ଖାତା ପଡ଼ିଛି । ସେ ଖଣ୍ଡ ଗୋଟିଏ ଇଂରେଜୀ ପ୍ରବନ୍ଧ ଖାତା—ଭିତରେ ଠାଏ ଠାଏ ନାଲି କାଳିରେ ସଂଶୋଧିତ ହୋଇଛି । ଗୋପାଳ ପୃଷ୍ଠା ପରେ ପୃଷ୍ଠା ଓଲଟାଉଥାନ୍ତି । ବେଳେବେଳେ ପୃଷ୍ଠା ଲେଉଟାଇବା ବନ୍ଦ କରି ଦେଇ ଉପରକୁ ଚାହିଁ କଣ ଭାବୁଛନ୍ତି । ତା'ପରେ ପୁଣି ପୂର୍ବପରି ଶୂନ୍ୟ ମନରେ ପୃଷ୍ଠା ଲେଉଟ ପାଲଟ ଚାଲିଲେ । ପ୍ରାୟ ଅଧଘଣ୍ଟା ଗଲା । ଖାତା ବନ୍ଦ କରି, ସଯତ୍ନରେ ତାକୁ ଖଣ୍ଡିଏ କାଗଜଖୋଳ ଭିତରେ ଥୋଇ, ମେଲା ଆଲମାରିର ଥାକରେ ରଖୁ ରଖୁ ଗୁଣୁଗୁଣୁ ସ୍ୱରରେ କହିଲେ, "କନକ, ସଂଶୋଧନ କରି ସାରି ଫେରାଇଦେବି ବୋଲି କହି, ନ ଫେରାଇବାରୁ ଠକ ବୋଲି ଭାବୁଥିବ । ଭାବିର ପଛେ, ମୁଁ ଆଉ ଏଖଣ୍ଡ ଛାଡ଼ି ପାରିଲି ନାହିଁ । ଏ ଖଣ୍ଡ ମୋର ଏ ଅସରନ୍ତି ସମୟ କାଟିବାରେ ଯେ ସହାୟ ହୋଇଛି !"

ଆଉ କଣ ମନେ ପଡ଼ିଗଲା । ଟେବୁଲ ପାଖୁ ଉଠି ଆସି ବାରନ୍ଦାକୁ ବାହାରି ଗୋପାଳ ପାଚେରି ଆଡ଼କୁ ଚାହିଁଲେ । ଦୁଆର ଭିତରୁ ଶିକୁଳି ଦିଆ ହୋଇଛି । ଧୂଡ଼ ଗାଡ଼ିରେ ଯାଇ ଶିକୁଳି ଫିଟାଇ

ବାହାରକୁ ଗୃହିଁଲ ବେଳକୁ ଜଗୁଆ ଗୋଟିଏ ବୁଦାରୁ କୋଳି ତୋଳୁଛି । ପାଖରେ ଜଗୁଆର କୁକୁର ଭୁତ ଠିଆ ହୋଇ ଦୂରର କୌଣସି ଜନ୍ତୁର ଗନ୍ଧ ଶୁଙ୍ଘି ଜାଣିବାକୁ ଚେଷ୍ଟା କରିବା ଉଦ୍ଦେଶ୍ୟରେ ନାକଟାକୁ ସେହି ଦିଗରେ ଲମ୍ବାଇ ଦେଇଛି ।

ଗୋପାଳ ଦୁଆର ଫିଟାଇବାର ଦେଖି ଭୁତ ଲାଙ୍ଗୁଡ଼ ହଲାଇ ହଲାଇ ଶୁଙ୍ଘିବା କାର୍ଯ୍ୟଟା ଅନାବଶ୍ୟକ ବୋଲି ଛାଡ଼ିଦେଇ ଘର ଭିତରକୁ ପଶି ଆସିଲା । ଜଗୁଆ କୋଳି ତୋଳିବା ବନ୍ଦ କରୁ କରୁ କହିଲା, "ବାବୁ, ଶୋଇ ପଡ଼ିଥିଲ କି ? ମୁଁ ଆଜ ସେତେ ଡାକିଲିଣି ।"

ଗୋପାଳ ଲଜ୍ଜିତ ହୋଇ, "ମୋତେ ଶୁଭିଲା ନାହିଁ" ବୋଲି ଦୋଷ ସ୍ୱୀକାର କରି ପଚାରିଲେ, "କିରେ ଜଗୁଆ, ତୋ ବାପଘର ସରିଗଲା ?"

ଜଗୁଆ ଲଜ୍ଜା ମିଶ୍ରିତ ଅଭିମାନରେ ଉତ୍ତର ଦେଲା, "ହଁ, ସରିଲଣି । ତମେ ତ ଗଲ ନାହିଁ ବାବୁ, ବୋଉ ଭାରି ବ୍ୟସ୍ତ ହେଲା । ବାହାଘର ଦିନ ସକାଳୁ ଭାରି ମନ ବ୍ୟସ୍ତରେ କହିଲା, ଯାହା ଯୋଗୁ ବାହାଘର ସେ ଏତେବେଳକୁ ବନସ୍ତ ଭିତରେ ବୁଲୁଥିବେ ।"

ଗୋପାଳ—ତୁ ତାକୁ ବୁଝେଇ ଦେଲୁ ନାହିଁ, ଜଗୁଆ ! ମୁଁ ପର କୁଆଡ଼େ ଯିବି ନାହିଁ ବୋଲି ନିୟମ କରିଛି ।

ଜଗୁଆ—ଏ ପୁଣି ଗୋଟାଏ କି ନିୟମ ? ଏଇ ବନସ୍ତଟାରେ ଥିବ ? ବାହା ତୋଳା ହେଲେ କଣ ଇଠେଇଁ ହବ । ଆଉ କୁ' ଗାଁକୁ ଯିବ ନାହିଁ ?

ଗୋପାଳ କିଛି ନ କହି ଅଜାଣତରେ ଗୋଟାଏ ଦୀର୍ଘ ନିଶ୍ୱାସ ପକେଇଲେ । ଜଗୁଆ ବାହାଘର କଥାଟା ପକାଇବା ଉଚିତ ହେଲା ନାହିଁ ଭାବି ବୋଲି ଭିତରେ ଦୁଃଖିତ ହେଲେ । ଅନ୍ୟ କଥା ପକାଇବାକୁ

ଯାଇ ଜଗୁଆ ପ୍ରାର୍ଥନା କଲାପରି କହିଲା, "ବାବୁ, ମାସକେ ଥରକରୁ ବେଶୀ ନ ଆସିବାକୁ ଯୁ' କଥା କରୁଛ, ସେଇଟା ରଖ ନାହିଁ । ମୁଁ ଖାଲି ମାସକଯାକ କୁ'ଦିନ ଆସିବ, କୁ'ଦିନ ଆସିବି ହଉଚ ।"

ଗୋପାଳ—ନାଇଁ ନାଇଁ, ସେ କଥା ହବ ନାହିଁ । ଜଙ୍ଗଲଟାକୁ ବେଶୀ ଆସିବା ଭଲ ନୁହେଁ । ଏ ଜଙ୍ଗଲରେ ବାଘ, ଭାଲୁ ଅଛନ୍ତି । ମୁଁ ପ୍ରତିଦିନ ରାତିରେ ଶବ୍ଦ ଶୁଣୁଛି ।

କଥାଟାକୁ ଅବଜ୍ଞାରେ ଉଡ଼ାଇ ଦେଇ ଜଗୁଆ ହସି ହସି କହିଲା, "ଆମେ ପରା ଖୋର୍ଦ୍ଧା ମଣିଷ ବାବୁ ! ଆମର ବାଘକୁ ଡର ନାହିଁ । କଟକ ଲୋକଙ୍କୁ ବଲୁଆ ମହାବଳ । ତମେ କଟକ ମଣିଷ ହୋଇ ଜଙ୍ଗଲରେ ରହିଚ, ଆଉ ମୁଁ ମାସକେ ତିନ ଥର ଆସିପାରିବି ନାହିଁ !"

ଗୋପାଳ ପାଚିରିକି ଦେଖାଇ କହିଲେ, "ଯୁଆକୁ ଡେଇଁ କରି କୁ' ବାଘ ମୋ' ପାଖକୁ ଆସିବ, କହିଲୁ ? ବାଟରେ ହି'ପାଖେ ତ ପାଚିରି ନାହିଁ । ଥାଉ ଥାଉ ସେ କଥା । ଚାଲ ବଗିଚାଟା ଦେଖିବୁ— ଗଛସବୁ କେମିତି ବଢ଼ୁଛନ୍ତି ।"

"ହଉ ଟିକିଏ ରହ" ବୋଲି କହି ଜଗୁଆ ଗୋଟାଏ ଗଛ ମୂଳରେ ରଖାହୋଇଥିବା ଟୋକେଇଟାକୁ ଧରି ଗୋପାଳଙ୍କ ଘର ଭିତର ଆଡ଼କୁ ଚାଲିଲା । ପୁଣି କ'ଣ ଗୁଡ଼ାଏ ଆଣିଲୁ ଟି ବୋଲି ମଧୁର ଭର୍ତ୍ସନା ଦେଇ ଗୋପାଳ ତା' ପଛେ ପଛେ ଗଲେ । ଟୋକେଇଟି ଭିତରୁ ହଳଦିଗୁଣ୍ଡାଠାରୁ ଆରମ୍ଭ କରି ପାଚିଲା କଦଳୀ, ଚିନି ପର୍ଯ୍ୟନ୍ତ କେତେ କଣ ବାହାରିଲା । ଏସବୁ ଜଗୁଆ ମା ଗଲା ମାସ ତମାମ୍ ମନେ ପକେଇ ପକେଇ ଟୋକେଇ ଭିତରେ ସାଇତି ରଖିଥିଲା, ପଠେଇବାକୁ ।

ଶେଷରେ ଝୋଟେଇ ଭିତରୁ ବାହାରିଲା ଗୋଟିଏ ଟେଙ୍ଗଣ ଡାଲା । ଡାଲାଟି ଦେଖି ଗୋପାଳ ବାସ୍ତବିକ ବିରକ୍ତ ହୋଇ ଚିତ୍କାର କଲେ । "ଏପରି ଘିଅଫିଅ ପଠେଇଲେ, ମୁଁ ତୋତେ ଆସିବାକୁ ମନାକରିଦେବି । ଆଉ ଯେବେ ଆସି ଡାକଲେ ପାଚେରି ଦୁଆର ଫିଟିବ ନାହିଁ ।"

ଜଗୁଆ ସେ କଥାରେ କର୍ଣ୍ଣପାତ ନ କରି ହସି ହସି ଡାଲା ଧରି ଠିଆ ହୋଇ କହିଲା "କାହିଁକି ଏପରି ହଉଚ ? କିଏ ଘିଅ ଆଣିଚି ଯେ ଏତେ ବିରକ୍ତ ? ଆସ ମୋ ସାଙ୍ଗରେ ।"

ଗୋପାଳ ଡାଲା ଭିତରେ ଜିନିଷଟା କ'ଣ ବୁଝିପାରି ହସି ହସି ତା' ପଛରେ ଚାଲିଲେ । ଜଗୁଆ ପୋଖରୀ କୂଳରେ ଯାଇ ଡାଲାଟି ପାଣି ଭିତରେ ବୁଡାଉ ବୁଡ଼ାଉ ଫୁଟ୍‌କିନା ତା ଭିତରୁ ଗୋଟିଏ ଖୁବ୍ ବଡ଼ ଶେଉଳ ପାଣି ଭିତରକୁ ଚାଲିଗଲା । ପାଣି ଭିତରକୁ ବୁଡ଼ିଯାଉଥିବା ମାଛଟିକି ଦେଖାଇ ଜଗୁଆ କହିଲା, "ଆସିଲାବେଳକୁ ନଧିଆ ଏ ଜିନିଷଟି ମୋତେ ଦେଲା । ମୁଁ ନାହିଁ ନାହିଁ କରୁଥିଲି, ମାତ୍ର ତା କାନ୍ଦରେ ବାଧ୍ୟ ହୋଇ ଆଣିବାକୁ ପଡ଼ିଲା ।"

ଗୋପାଳ—ସେ ଏତେ ମାଛ ଗୁଡ଼ାକୁ କାହିଁକି ? ମୁଁ ଯଦି ଦିନେ ଦୁଇ ଦିନରେ ଗୋଟାଏ ଯୋଡ଼ାଏ ଲେଖାଏଁ ମାରୁନଥାନ୍ତି, ତାହାହେଲେ ପୋଖରୀଟା ଏତେବେଳକୁ ପୂରି ଯାଆନ୍ତାଣି ।

ଜଗୁଆ ଉତ୍ତର ଦେଲା, "ମାସକେ ତ ଗୋଟାଏ ମାଛ ଆଣିଲି, ପୋଖରୀ ପୂରିବ କିମିତି ମ ?"

ଗୋପାଳ—ଆଜ ସିନା ଗୋଟାଏ ଆଣିଲୁ, ପ୍ରଥମେ ଯେ ପ୍ରତି ଦିନ ଶହ ଶହ ଆସୁଥିଲା, ସେ କଥା ଆଉ ମନେ ନାହିଁ ପରା ?

ଜଗୁଆ ଏଥିକୁ କିଛି ଉତ୍ତର ନ ଦେଇ ଘର ଆଡ଼କୁ ମୁହାଁଇଲା । ଘରେ ଡାଲାଟି ଥୋଇ ଦେଇ ଦୁଇ ବନ୍ଧୁ ବଗିଚାରେ ବୁଲିଗଲେ ।

ଜଗୁଆ ଶାଗ କିଆରୀରୁ ଘାସ୍‌ଟାଏ, ବାଇଗଣ ବାଡ଼ିରୁ ପୋକଖିଆ ପତ୍ର ଛିଣ୍ଡାଏ, ଏହିପରି ସଂସ୍କାର କରୁ କରୁ ଗାଁର ଖବର, ତା' ଶୁଣିବା ବାହାର ଖବର ଅନର୍ଗଳ ଗପିଗଲା ।

ସନ୍ଧ୍ୟା ଆଉ ଟିକିଏ ଗଲେ ହେବ । ଗୋପାଳ ଜିଦ୍ ଧଇଲେ ଜଗୁଆ ଫେରିଯିବାକୁ । ରାତିଟାଏ ତାଙ୍କ ସଙ୍ଗେ ରହିବାକୁ ଜଗୁଆ କେତେ କାକୁତି ମିନତି କଲା ; ମାତ୍ର ଗୋପାଳ ସେଥିରେ ନ ଭୁଲି ତା ମୁଣ୍ଡରେ ବୋଝ୍ଟି ଦେଇ ଆଗେ ଆଗେ ବାହାରି କହିଲେ, 'ଆସ' । ଜଗୁଆ ବାଧ୍ୟ ହୋଇ ବାହାରିଲା । ଗୋପାଳ ମନା ନ ମାନି ଅଧମାଇଲ ଦୂରରେ ଥିବା ସଡ଼କ ପର୍ଯ୍ୟନ୍ତ ତାକୁ ଛାଡ଼ିବାକୁ ଗଲେ । ବିଦାୟ ଦେବା ପରେ ଘରକୁ ଫେରି ଦୀର୍ଘନିଶ୍ୱାସ ମଧ୍ୟରେ ପାଚିଶି ଦୁଆରଟି ବନ୍ଦ କରି ବାସଗୃହକୁ ଗଲାବେଳକୁ ସନ୍ଧ୍ୟା ହୋଇଯାଇଛି । ଚନ୍ଦ୍ରକିରଣରେ ଦକ୍ଷିଣର ପର୍ବତ ଦୁଇଟିର ଚିକ୍‌କଣ ହରିତ୍‌ଶୋଭାକୁ ଚାହିଁଲେ ସହଜରେ ଆଖି ଫେରନ୍ତା ନାହିଁ ; ମାତ୍ର ଏ ସବୁ ଶୋଭା ମଧ୍ୟରେ ଗୋପାଳଙ୍କ ମନରେ କି ଘୋର ଅଭାବ, କି ଘୋର ଶୂନ୍ୟତା ! ସାଙ୍ଗରେ କନକ ଠିଆ ହୋଇଥିଲେ ସିନା ଏ ଶୋଭାଟା ଉପଭୋଗ୍ୟ ହୁଅନ୍ତା ! କନକ ପାଖରେ ଠିଆ ହୋଇଥିଲେ ଏ ନିର୍ଜନତା ତ ଏପରି ଅସହ୍ୟ ହୁଅନ୍ତା ନାହିଁ । ଏ ନିର୍ଜନ ଜଙ୍ଗଲ ଭିତରେ ରହି ସେ ସମାଜ ଛାଡ଼ିଦିଅନ୍ତେ, ଭବିଷ୍ୟତର ଉଜ୍ଜ୍ୱଳ ଚିତ୍ର ଉପରେ କାଳି ବୋଳିଦିଅନ୍ତେ । ପ୍ରକୃତି ସଙ୍ଗେ ମିଶିଯାଇ, ପ୍ରାକୃତିକ ନିର୍ମଳ ଶୋଭା ଅନୁଭବ କରୁ କରୁ ସଂସାରଲୀଳା ସାଙ୍ଗ କରିଦିଅନ୍ତେ । ଘରପାଖର ଜଙ୍ଗଲରେ ବୁଲି ବୁଲି ବଣ୍ୟ କୋଳି ସଂଗ୍ରହ କରୁ କରୁ ଭିନ୍ନ ଭିନ୍ନ ପଶୁପକ୍ଷୀଙ୍କ ଶବ୍ଦ ଚିହ୍ନି ଚିହ୍ନି ଦିନ କଟିଯାନ୍ତା । କନକ ରାତିରେ ସାଙ୍ଗରେ ଥିଲେ ରାତି ବାରଘଣ୍ଟା ଯାକ ବାର ମିନିଟ୍ ପରି ଲାଗନ୍ତା । କନକ ଅଭାବରେ ଦିନଟା କେଡେ ବଡ଼ ଲାଗୁଛି, ରାତିଟା

କେଡ଼େ ଅସରନ୍ତ ! ମାସକେ ଥରେ ଥରେ ଜଗୁଆ ଆସିବାରୁ ବାହାରେ ଲୋକ ଥିବାର ଜଣାଯାଉଚି । ଦିନଟି ଅଚଳାରେ କଟି ଯାଉଚ ମାତ୍ର ବାକୀ ଅଣତିରିଶ ଦିନଟି ଯାକ ଦିନ ରାତି ସମାନ, ଏକ ଅତି ଘୋର ନିର୍ଜନତା !

## ଦଶ

ବୀରେନ୍ଦ୍ରଙ୍କ ମୁହଁର ହର୍ଷଭାବ ଦେଖି ଜଣାଯାଉଥାଏ, ତାଙ୍କ ଉଦ୍ଦେଶ୍ୟସାଧନ ସୁନିଶ୍ଚିତ ! ମଦନ ବାବୁଙ୍କଠାରୁ କିଛି ଅଭୟ ବର ମିଳିଛି—ବୀରେନ୍ଦ୍ର ସେହି ବର ଉପରେ ନିର୍ଭର କରି ଭବିଷ୍ୟତ ଜୀବନ କଳ୍ପନାରେ ପୁଲକିତ ହେଉଛନ୍ତି । କଟକରେ ସେ ହେବେ ସବୁଠାରୁ ବେଶୀ ଭାଗ୍ୟବାନ୍—ସମସ୍ତେ ତାଙ୍କର ଆଡ଼କୁ ଚାହିଁ କହିବେ "କଟକରେ ଏଇ ଏକା ଲୋକ ।" ତାଙ୍କ ପାଖରେ କନକଙ୍କୁ ଦେଖି କଟକର ଯୁବକମଣ୍ଡଳୀ ଈର୍ଷାରେ ପୋଡ଼ି ହୋଇ ମରିବେ । କଟକର ହତଭାଗ୍ୟ ଯୁବକମାନଙ୍କ ଶୋଚନୀୟ ଅବସ୍ଥା କଳ୍ପନାରେ ଦେଖି ସେ ନ ହସି ରହିପାରିଲେ ନାହିଁ ।

ଖାଲି ସେତିକି ନୁହେଁ । ସେ—ଯେ ସେଦିନ କହିଥିଲା— "ଆପଣଙ୍କ ସଙ୍ଗେ ଆଉ ମୂହୂର୍ତ୍ତେ ସୁଦ୍ଧା କଟାଇବାକୁ ମୋର ଘୃଣା ହେଉଛି ।" ବିବାହ ଦିନ ସ୍ଥିର ହୋଇଥିଲା । ମାସକ ବାଦ ବାହାଘର । ସେ କୁଆଡ଼େ ତାଙ୍କ ନାଁରେ ଦୁର୍ନାମ ଶୁଣି ଘୃଣାରେ ତାଙ୍କୁ ଛାଡ଼ି ଚାଲି-ଯାଇଥିଲା । ଗଲାବେଳେ କହିଥିଲା, "ଯେଉଁମାନଙ୍କର ଯୁବତୀମାନଙ୍କ ସହିତ ଏହି ସମ୍ବନ୍ଧ, ସେମାନେ କିପରି ଯେ ଭଦ୍ରଲୋକ ଘରେ ଏପରି ନିଃସଙ୍କୋଚରେ ପଶି ପାରନ୍ତି, ତାହାହିଁ ମୋତେ ଆଶ୍ଚର୍ଯ୍ୟ ଲାଗୁଛି ।" ତା'ର ସେ କଥା, ସେ ଗୃହିଣୀ ଆଜ ପର୍ଯ୍ୟନ୍ତ ପାସୋର ଯାଇନାହିଁ ।

କେବେ କମିତ ତାର ମୁହାଁମୁହିଁ ପଡ଼ିଗଲେ ବୀରେନ୍ଦ୍ରଙ୍କ ମୁହଁ ଲଜ୍ଜାରେ ପୋଡ଼ିଗଲାପରି ଲଗେ । ସେ, ତା'ର ପିତା, ଯେ କି ତା ସମ୍ମୁଖ ଏ ଦୃଶ୍ୟ ପରେ ଅଭଦ୍ରତାର ଚରମ ନିଦର୍ଶନ ଚିଠି ଖଣ୍ଡ ଲେଖିଥିଲେ —ସେ ଦୁହେଁ ତାଙ୍କର ଏ ସୌଭାଗ୍ୟ ଦେଖି କଣ ମନେ କରିବେ ? ତାଙ୍କ ଔଦ୍ଧତ୍ୟ ଧିକ୍କାର ହୋଇଯିବ ନାହିଁ କି ? ବୀରେନ୍ଦ୍ର ମନେ ମନେ ସ୍ଥିର କଲେ—କନକ ସହିତ ବିବାହ ପରେ ଦିନେ ତାଙ୍କ ଘରକୁ ଯିବେ ଏବଂ ତାକୁ, ସେଇ ଯେ ସେଦିନ ଗୋଡ଼ରେ ଫିଙ୍ଗି ଦେଇ ଚାଲି ଯାଇଥିଲା—ତାକୁ କହିବେ, "ବର୍ତ୍ତମାନ ଦେଖ, ଯାହାର କଳଙ୍କ ସମ୍ବାଦ ଶୁଣି ତୁମେ ଅଯୋଗ୍ୟ ବୋଲି ଘୃଣାରେ ଛାଡ଼ି ଚାଲି ଆସିଥିଲ, ସେହି କଳଙ୍କିତ ମୋତେ, ତୁମଠାରୁ ଶହେ ଗୁଣରେ ସୁନ୍ଦରୀ, ବରଣମାଳା ଦେଇଛି । ତୁମ ବାପା ମୋତେ ସେଦିନ ଦୂର କରି ଦେଇଥିଲେ ; କିନ୍ତୁ ତୁମ ବାପାଙ୍କଠାରୁ ଦଶଗୁଣ ଧନୀ ମଦନ ବାବୁ ମୋତେ ତାଙ୍କ ସମ୍ପତ୍ତିର ଉତ୍ତରାଧିକାରୀ କରିଛନ୍ତି ।" କଳ୍ପିତ ବିଜୟ-ଉଲ୍ଲାସରେ ତାଙ୍କ ମୁଖମଣ୍ଡଳ ପୁଲକିତ ହୋଇ ଉଠିଲା ।

ପୁଣି ମନେ ପଡ଼ିଗଲା ତାଙ୍କର ସେ ବିପୁଳ ଋଣର କଥା । ବିବାହ ଦିନ ଶେଷ ହେଉ ନ ହେଉଣୁ ସେ କନକଠାରୁ ତା' ପୋଷ୍ଟ ଅଫିସ ସଞ୍ଚିତ ଟଙ୍କାର ଖାତା ମାଗିବେ । ତାକୁ ବାଧ୍ୟ କରି ଦସ୍ତଖତ କରାଇ ପୋଷ୍ଟ ଅଫିସରୁ ଟଙ୍କା କାଢ଼ି ଋଣଗୁଡ଼ାକ ଶୁଝିନେବେ ଏବଂ ତାଙ୍କ ଗୁପ୍ତ ରହସ୍ୟ ସବୁ ଯେଉଁମାନେ ଜାଣନ୍ତି ତାଙ୍କୁ ପ୍ରଚୁର ପୁରସ୍କାର ଦେଇ କୌଣସିମତେ କଟକରୁ ଅନ୍ତର କରିବେ—ନିଜକୁ ନିରାପଦ ରଖିବେ । ଯେଉଁ ପୁଲିସବାଲାମାନେ ତାଙ୍କ ବିରୁଦ୍ଧରେ ପ୍ରମାଣ ସଂଗ୍ରହ କରିବାକୁ ଖୋଜ ହେଉଛନ୍ତି, ତାଙ୍କୁ ଆହୁରି ଟିକିଏ ଭଲ କରି ବୋକା ବନେଇଦେବେ । ନିଜର ଚତୁରତାରେ ସେ ନିଜେ ବେଶ୍ ମଜା ଅନୁଭବ କଲେ ।

ଏହିପରି ନାନା ଚିନ୍ତା ମଧ୍ୟରେ ଯାଇ ମଦନବାବୁଙ୍କ ଫାଟକ ମେଲାଇଦେଲାବେଳକୁ ସେ ଦେଖିଲେ, ବାବୁ ବଗିଚାରେ ପଦଚାରଣ କରୁଛନ୍ତି । ମଦନ ବାବୁଙ୍କ ଆଖି ବୀରେନ୍ଦ୍ରଙ୍କ ଉପରେ ପଡ଼ିଲା । ବୀରେନ୍ଦ୍ର ଯାଇ ଭାବୀ ଶ୍ୱଶୁରଙ୍କ ନିକଟରେ ଠିଆ ହେଲେ । ବୃଦ୍ଧ ବୀରେନ୍ଦ୍ରଙ୍କ ହର୍ଷୋତ୍‌ଫୁଲ୍ଲ ମୁଖ ଦେଖି ତାଙ୍କ ସମ୍ମତିର କଳ୍ପନା କରି ମନେ ମନେ ସନ୍ତୁଷ୍ଟ ହୋଇ କହିଲେ, "କନକ ସଙ୍ଗେ କଥାବାର୍ତ୍ତା ହୋଇଛ ବାବା ?" ବୀରେନ୍ଦ୍ର ଟିକିଏ ଲଜ୍ଜିତ ହୋଇ ଉତ୍ତର ଦେଲେ "ନା, କାଲି ଆପଣଙ୍କଠାରୁ ଗଲାବେଳକୁ ବହୁତ ରାତି ହୋଇଯାଇଥିଲା ।"

ମଦନ ବାବୁ – ଆଚ୍ଛା, ଏଇଲାଗେ କହ । ଡେରବେରରେ ବିଶେଷ କିଛି ପ୍ରୟୋଜନ ନାହିଁ । କନକ କୁମୁଦିନୀ ସାଙ୍ଗେ ବୁଲି ଯାଇଛି ବୋଧହୁଏ ।

ବୀରେନ୍ଦ୍ର କନକର ଆଗମନ ପ୍ରତୀକ୍ଷାରେ ତା'ର ପଢ଼ାଘରକୁ ଅଗ୍ରସର ହୁଅନ୍ତେ, ମଦନ ବାବୁ ତାଙ୍କୁ ପୁଣି ପାଖକୁ ଡାକି କହିଲେ, "ବାବା, ମୁଁ ତୁମକୁ କାଲି କହିଛି, ମୋ ମତରେ କନକ ବାଧା ଦେଲେ ସେ ବାଧା ରହିବ ନାହିଁ । ମୋର କନ୍ୟାକୁ ମୁଁ ସତ୍‌ପାତ୍ରରେ ଦେବାର ଅଧିକାର ଈଶ୍ୱରଙ୍କଠାରୁ ପାଇଛି । ତେବେ ବାବା ! ଆମ ସମାଜରେ କନ୍ୟାର ସମ୍ମତି ନେବା ପ୍ରଥାଟି ଚଳି ଆସିଲାଣି । କନକ ଯଦି ତୁମକୁ ନିଜେ ଗ୍ରହଣ କରେ, ତେବେ ସବୁ ଗୋଳ ମେଣ୍ଟିଯିବ । ଯାଅ ବାବା, କାର୍ଯ୍ୟରେ ସଫଳମନୋରଥ ହୁଅ ।"

ବୀରେନ୍ଦ୍ର କନକର ପଢ଼ାଘର ଚଉକିରେ ଯାଇ ବସିଲେ । ଚଉକି ଆଗରେ ଟେବୁଲ ଉପରେ ଖଣ୍ଡିଏ ବହି ଖୋଲା ହୋଇ ପଡ଼ିଛି । ବୋଧହୁଏ କାଲି ରାତିରେ ଏ ଖଣ୍ଡ ପଢ଼ା ହେଉଥିଲା । ବସୁ ବସୁ କେତେ ଚିନ୍ତା ଆସି ମନେ ପଡ଼ିଗଲା । କନକ ସହିତ କଣ ନାହିଁ କରି-

ଦେବ ? ନାହିଁ କରିବାର କିଛି ଲକ୍ଷଣ ତ ଦେଖାଯାଇନାହିଁ । କନକ ଆଗରେ କୌଶଳରେ ଏ କଥା ଉତ୍ଥାପନ କଲେ ତା' ମୁହଁ ଲାଜରେ ନାଲି ପଡ଼ିଯିବା କଥା, ସେ ଥରେ ଅଧେ ଦେଖିଥିବାର ମନେ ପକେଇ ଆଶ୍ୱସ୍ତ ହୋଇ ଗୋଟିଏ ନିଃଶ୍ୱାସ ମାଇଲେ । ପୁଣି ମନେ ପଡ଼ିଗଲା, କନକ ତାଙ୍କ ସଙ୍ଗେ କଥାବାର୍ତ୍ତା ହେଲାବେଳେ ଘୋର ଉଦାସୀନ ଜଣାଯାଏ । ଏ ଉଦାସୀନତା କାହିଁକି ? ଆଉ କଣ କିଏ ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ଅଛି ? ଅସମ୍ଭବ ! କନକ କଣ ଏଡ଼େ ମୂର୍ଖ ଯେ ତାଙ୍କ ପ୍ରତିଦ୍ୱନ୍ଦ୍ୱୀ ବୋଲି ଆଉ କାହାକୁ ଗଣିବ ? ନିଶ୍ଚୟ ଏ ଉଦାସୀନତାଟା ତାଙ୍କ ନଜର ଭ୍ରମ । କନକ ଟିକିଏ ଗମ୍ଭୀର । ଗାମ୍ଭୀର୍ଯ୍ୟକୁ ସେ ଉଦାସୀନତା ବୋଲି ଭୁଲ କରିଛନ୍ତି ।

କନକ ଫେରିଲେ । ବୁଲି ଯାଉ ଯାଉ କୁମୁଦିନୀଠାରୁ ବୀରେନ୍ଦ୍ରଙ୍କ କଥା ଶୁଣି କନକ ସ୍ଥିର କରିଥିଲେ, ଗୋପାଳ ତାଙ୍କ ହୃଦୟ-ସିଂହାସନ ଅଧିକାର କରିଥିଲେ ହେଁ, ଅନ୍ତତଃ ବୀରେନ୍ଦ୍ରଙ୍କ ନିମନ୍ତେ ତାଙ୍କୁ ସିଂହାସନଚ୍ୟୁତ କରିବାକୁ ହେବ । ତାଙ୍କ ନିମନ୍ତେ ଯେ ଏତେ ଚିନ୍ତିତ, ତାଙ୍କ ଅଭାବରେ ଯାହାଙ୍କର ଏତେ ଦୁଃଖ, ତାଙ୍କୁ ପାଇବା ପାଇଁ ସେହି ବୀରେନ୍ଦ୍ରଙ୍କର ଅଧିକାର ଖୁବ ବେଶି ।

କନକ ପଢ଼ାଘରେ ବୀରେନ୍ଦ୍ରଙ୍କୁ ଦେଖି, ଟିକିଏ ଲଜ୍ଜିତ ହୋଇ ବସି ପଡ଼ିଲେ । କନକଙ୍କୁ ଦେଖି ବୀରେନ୍ଦ୍ରଙ୍କର ଆଶାର ସଞ୍ଚାର ହେଲା । ସେ କନକଙ୍କ ଆଡ଼କୁ ଲୋଲୁପ ଦୃଷ୍ଟି ପକାଇ କହିଲେ, "କନକ, ମୁଁ ତୁମକୁ ଆଜି ଘଣ୍ଟାଏ ହେଲା ଅପେକ୍ଷା କରି ବସିଛି ।"

କନକ ବୋଧହୁଏ ଅପେକ୍ଷା କରିବାର କାରଣଟା ବୁଝି ତୁନି ହୋଇ ରହିଲେ ।

ବୀରେନ୍ଦ୍ର ଆହୁରି ଆଶାୟୀ ହୋଇ କହିଗଲେ, "କନକ, ଆଜି ତୁମକୁ ଏଠାରେ ଅପେକ୍ଷା କରି ବସିଛି, ମାତ୍ର ଏ ଅପେକ୍ଷା କିଛି

ନୁହେ । ଛ'ମାସ ହେଲା ପ୍ରତି ମୁହୂର୍ତ୍ତ, ମୋ' ଶୁଷ୍କପ୍ରାଣ ତୁମର ଅପେକ୍ଷାରେ ଉତ୍‌କଣ୍ଠିତ ହୋଇଛି । ତୁମର ଆଶାରେ ଏ ଜୀବନ ଅଛି । ନ ହେଲେ ଅନେକ ଦିନୁ ଏ ସଂସାର ତ୍ୟାଗ କରି ପାରନ୍ତିଣି । ମାତ୍ର ଆଜି ପର୍ଯ୍ୟନ୍ତ ତୁଣ୍ଡ ଫିଟାଇ କିଛି କହିବାକୁ ସାହସ କରିନଥିଲି, ତୁମର ଯୋଗ୍ୟ ମୁଁ ନୁହେଁ ବୋଲି । ଆଜି ଯେ ମୁଁ ତୁମର ଯୋଗ୍ୟ ହୋଇଛି, ତା' ନୁହେଁ ; ମାତ୍ର ଆଉ ସ୍ଥିର ହୋଇ ଅପେକ୍ଷା କରିବା ଅସହ୍ୟନୀୟ ହୋଇ ଉଠିଲା ।"

କନକ କିଛି ନ କହି ନଖରେ ଟେବୁଲ ଉପରେ ଗାରେଇ-ବାକୁ ଲାଗିଲେ ।

ବୀରେନ୍ଦ୍ର—ତେବେ କଣ ମୋର ଆଶା ବୃଥା କନକ ! ତେବେ କଣ ନିରାଶାରେ ଏ ଜୀବନକୁ କଟାଇବାକୁ ପଡ଼ିବ ? ତେବେ କଣ ଦିନ ନାହିଁ ରାତି ନାହିଁ ସବୁବେଳେ ତୁମର ଚିନ୍ତାରେ ମରିବାକୁ ହେବ ?

ବୀରେନ୍ଦ୍ର କଥାଟାକୁ ଏପରି ନାଟକୀୟ ଛଟାରେ କହିଲେ, ସ୍ୱରକୁ ଥରାଇ ମନର ଆବେଗ ସ୍ୱରରେ ଏପରି କୌଶଳରେ ପ୍ରକାଶ କଲେ ଯେ, କନକ ତାଙ୍କ ମୁହଁକୁ ଆଖି ଟେକି ଉତ୍ତର ଦେଲେ, "ମାତ୍ର ବାପା —"

ବୀରେନ୍ଦ୍ରଙ୍କ ସମସ୍ତ ଆବେଗ ଦୂର ହୋଇଗଲା । ସେ ଉତ୍ସାହିତ ହୋଇ କହିଲେ, "ଖାଲି ବାପା ତ ? ଯଦି ମୋତେ ଗ୍ରହଣ କରିବାରେ ଏତିକି ମାତ୍ର ଅସୁବିଧା, ତେବେ ବାପାଙ୍କ କଥା ମୋତେ ଲାଗିଲା । ଆଜି ବାପା ମୋତେ କହିଛନ୍ତି 'କନକ ମତ ଦେଲେ ହେଲା' ।"

ବାପା କଣ ତେବେ ସତେ ତାଙ୍କ ମତ ଉପରେ ନିର୍ଭର କରନ୍ତି ? ଅଭିମାନ ଏବଂ ଆନନ୍ଦରେ କନକଙ୍କ ଆଖିକୁ ଲୁହ

ଆସିଲା । ସେ ବଗିଚ୍ଛ ଆଡ଼କୁ ମୁହଁ କରି କଣ କେତେ ଚିନ୍ତା କଲେ ।

ଗୋପାଳ ମନେ ପଡ଼ିଗଲେ ; ମନେ ପଡ଼ିଗଲା ତାଙ୍କ କଥା । ସେ ତ ଆଜି ବୀରେନ୍ଦ୍ର ଯେପରି କହୁଛନ୍ତି, ସେହିପରି ଦିନେ କହି-ଥିଲେ । ଏତେ ହବ ନାହିଁ ପରି ? ତେବେ ଏଇଭଳି କେତେ କଥା । ମାତ୍ର ତାଙ୍କ କଥାର ଜୋର, ତାଙ୍କ ପ୍ରେମର ବଳ, ଖଣ୍ଡେ କାଗଜରେ ସେ କଣ ଦି'କଥା ଲେଖିଦେଲେ, ତାକୁ ବଳି ଉଠି ପାରିଲା ନାହିଁ ! ଗୋପାଳ ଯଦି ତାଙ୍କୁ ପ୍ରକୃତ ଭଲ ପାଇଥାନ୍ତେ, ତାହାହେଲେ ଏତେ ଅଳ୍ପକେ ଛାଡ଼ି ଚାଲିଯାଇଥାନ୍ତେ କି ? ମନ ହେଲା, ବୀରେନ୍ଦ୍ରଙ୍କୁ ନାହିଁ କରିଦେବେ ଆଶା ରଖିବାକୁ । ପୁଣି ବିଚାରିଲେ, କାହିଁକି ବା ନାହିଁ କରିବେ ? ଯେଉଁ ଆଶା ଯୋଗୁଁ ନାହିଁ କରିଦେବେ ବୋଲି ମନ ହେଉଛି, ସେ ଆଶା କେଡ଼େ ବୃଥା, ତାହା କଣ ଆଜି ପର୍ଯ୍ୟନ୍ତ ଜଣା-ଯାଇନାହିଁ ? ଯାହାର ଆଶାରେ ଆଜି ବୀରେନ୍ଦ୍ରଙ୍କୁ ନାହିଁ କରି-ଦେବେ ସେ ତ ଏତେବେଳକୁ ଆଉ କାହା ପାଖରେ ବସି ପ୍ରେମାଳାପ କରୁଥିବେ —

କନକ ଚିନ୍ତିତ ରହିବାର ଦେଖି ବୀରେନ୍ଦ୍ର କହିଲେ, "କନକ, ଆଉ ତେବେ ଆପତ୍ତି କଣ ? ମୁଁ ତୁମ ତୁଳନାରେ କିଛି ନୁହେ ସତ । ତେବେ ମୁଁ ତୁମକୁ ଖୁବ ସୁଖରେ ରଖିବାର ଚେଷ୍ଟା କରନ୍ତି । ତୁମ ନିମନ୍ତେ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ବୁଲି ଆସନ୍ତି । ମୋତେ ଗ୍ରହଣ କରିବ ନାହିଁ, କନକ ? ମୋ' ଶୁଷ୍କ ପ୍ରାଣରେ ଟିକିଏ ଆଶା-ବାରି ସିଞ୍ଚିବ ନାହିଁ, କନକ ?"

କନକ—ଏ ହତଭାଗିନୀ ପ୍ରତି ଆପଣଙ୍କର କାହିଁକି ଏତେ ଦୟା ? ମୁଁ ତ ଉପେକ୍ଷାର ସାମଗ୍ରୀ, ଅପେକ୍ଷାର ନୁହେଁ ।

ବୀରେନ୍ଦ୍ର—ତୁମେ ନିଜକୁ ଏତେ ହୀନ ବିଚାରୁଛ, କନକ ତୁମ ସ୍ୱଭାବସୁଲଭ ବିନୟ ଯୋଗୁଁ । ମାତ୍ର ବିନୟର ପୁଣି ତ ଗୋଟାଏ ସୀମା ଅଛି ! ତୁମକୁ ଉପେକ୍ଷା କରିପାରିବ ଏପରି ଲୋକ କିଏ ? ଯେ ଉପେକ୍ଷା କରିବ ସେ ହୁଏତ ସନ୍ନ୍ୟାସୀ, ନ ହେଲେ ମୂର୍ଖ, ପାଷଣ୍ଡ !

କନକ ତୁନି ହୋଇ ତଳକୁ ମୁହଁ ପୋତି ରହିଲେ । ବୀରେନ୍ଦ୍ର କନକଙ୍କ କଥାରୁ ସମ୍ମତି ବୁଝି ବିବାହର ଦିନ ଜ୍ଞାପନ କଲେ— "ଭାଦ୍ର ଚାଲିଛି, ଆସନ୍ତା ମାର୍ଗଶିର ମାସରେ ବିବାହ ।"

କନକଙ୍କର ଏ ବିବାହରେ ମତ ନାହିଁ କି ଅମତ ନାହିଁ । ଯାହାକୁ ହୃଦୟ ଦେଇଦେଇଥିଲେ, ସେ ଛାଡ଼ି ଚାଲିଗଲାଦିନୁ ଜୀବନର ସୁଖସ୍ୱାଚ୍ଛନ୍ଦ୍ୟ ଯାଇଛି, ଆଉ ଫେରିବ ନାହିଁ । ଏଥର ସେ ଅରକ୍ଷିତା, ଯେ ଗୋଟେଇ ନେବ ତା'ର । ବୀରେନ୍ଦ୍ର ନିଅନ୍ତୁ, ଯେଉଁ ଦିନ ଇଚ୍ଛା ସେ ଦିନ ବିବାହ ସମୟ ଧାର୍ଯ୍ୟ ହେଉ । ସେଥିରେ ତାଙ୍କର ଯାଏ ଆସେ କଣ ? ତେଣୁ ବୀରେନ୍ଦ୍ରଙ୍କ ସ୍ଥିରୀକୃତ ଦିନରେ କିଛି ଆପତ୍ତି ନ କରି ସେ ମୌନ ସମ୍ମତି ଜଣାଇଦେଲେ ।

## ଏଗାର

ନିର୍ଜନ ବାସଗୃହରେ ଖଟ ଖଣ୍ଡିରୁ ଗୋପାଳ ଉଠି ବାହାରକୁ ଚାହିଁଲ ବେଳକୁ ରାତି ଆଉ ଘଡ଼ିଏ ଖଣ୍ଡେ ଅଛି । ପାହାନ୍ତି ତାରାଟି ପୂର୍ବ ଦିଗରେ ଜକ୍‌ଜକ୍ ହୋଇ ସୂର୍ଯ୍ୟଙ୍କୁ ଅପେକ୍ଷା କରୁଛି । ଗୋପାଳ ପୂର୍ବ ଦିଗକୁ ଚାହିଁଲେ । ପାହାନ୍ତି ତାରାଟି ତାଙ୍କର ଚିର ସଙ୍ଗୀ ହୋଇଗଲାଣି । ଗଲ ୪ ମାସ ହେଲା ପ୍ରତି ପ୍ରତ୍ୟୁଷରେ ସେ ପ୍ରଥମେ ଦେଖନ୍ତି ସେହି ତାରାଟିକୁ । ତାରାଟି ଆଉ ଗୋଟିଏ ହେତୁରୁ ତାଙ୍କର ପ୍ରିୟ—ସେ ଯେଉଁ ଦିଗରେ ଜକ୍‌ଜକ୍ ଦିଶୁଛି, ସେହି ଦିଗରେ ତାଙ୍କ

ହୃଦୟର ତାରଟି ନିଶ୍ଚିନ୍ତ ନିଦ୍ରା-କୋଡ଼ରେ ଥିବ । ସେହି ହୃଦୟ-ତାରଟିର ତେଜରେ ଏ ତାରଟି ବେଶି ତେଜୀୟାନ ଦିଶୁଥିଲା ପରି ଗୋପାଳଙ୍କୁ ଜଣାଯାଉଥାଏ ।

କନକ କେଡ଼େ ଆନନ୍ଦରେ ନିଦ୍ରା ଯାଇଥିବେ ! ସେ ତ ଆଉ ପାହାନ୍ତିଆରୁ ଉଠି ପାହାନ୍ତ ତାରକୁ ଦେଖୁନଥିବେ ! ହୃଦୟକୁ ଚିନ୍ତା ଘାରୁ ନଥିଲେ ତ କେହି ପାହାନ୍ତ ନିଦସୁଖରୁ ବଞ୍ଚିତ ହୁଏ ନାହିଁ । କନକଙ୍କର ଚିନ୍ତା ଗୋଟାଏ କଣ ? ଚିନ୍ତା ଥିବ ଯଦି ଅନ୍ୟ ପାଇଁ ଥିବ—ତାଙ୍କ ପାଇଁ ତ ନୁହେଁ ! ତାଙ୍କ ପାଇଁ ସେ ଯଦି ଚିନ୍ତା କରୁଥାନ୍ତେ, ତେବେ ଏଡ଼େ ନିର୍ମମ ଭାବରେ କଣ ଦୂରକୁ ଫିଙ୍ଗି-ଦେଇଥାନ୍ତେ !

ଆଉ କ୍ଷଣକ ପରେ ଗୋପାଳ ଜୋରରେ ସମସ୍ତ ଚିନ୍ତା ଦୂର କରିବାକୁ ଯାଇ ମନେ ମନେ କହିଲେ, "ଧିକ୍ ମୋତେ ! ଯେ ମୋତେ ଏତେ ଅବଜ୍ଞା କରି ଦୂରକୁ ଫିଙ୍ଗି ଦେଇପାରେ, ତାହାରି ପାଇଁ ମୋର ଦିନରାତି ଏତେ ଚିନ୍ତା କାହିଁକି ?" ଏତିକି କହି ସେ ହାତଧରା ବଡ଼ ଠେଙ୍ଗା ଖଣ୍ଡିକ ଧରି ପାଚେରୀ ଦୁଆରଟି ଖୋଲି ମେଲକୁ ବାହାରିପଡ଼ିଲେ ।

ବର୍ଷା ଛାଡ଼ିଛି, ଛାଡ଼ି ନାହିଁ । ଶରତକାଳର ଉଜ୍ଜ୍ୱଳ ଚନ୍ଦ୍ରକିରଣ ତଳେ ଜଙ୍ଗଲର ସବୁଜ ଶୋଭା ଏବଂ ପାହାନ୍ତିଆର ମନ୍ଦ ଶୀତଳ ପବନ, ମନରେ ଅପୂର୍ବ ପ୍ରଫୁଲ୍ଲତା ଆଣୁଥାଏ । ମାନସିକ ଅଶାନ୍ତିକୁ ପ୍ରକୃତିର ସୌନ୍ଦର୍ଯ୍ୟ ଦେଖି ଦୂରୀଭୂତ କରୁ କରୁ ଅନ୍ୟମନସ୍କ ଗୋପାଳ ବୁଦାମାନଙ୍କ ମଧ୍ୟରେ ଥିବା ସରୁ ରାସ୍ତାରେ ବାସଗୃହଠାରୁ ପ୍ରାୟ ଅଧ ମାଇଲ ଗୃଲିଗଲେଣି । ଅଳ୍ପ ଦୂରରେ ଗଞ୍ଜାମ ବଡ଼ ସଡ଼କର ଦୁଇପାଖରେ ଥିବା ଗଛଗୁଡ଼ିକ ଅସ୍ପଷ୍ଟଭାବେ ଦକ୍ଷିଣ ପୂର୍ବରେ ଅବସ୍ଥିତ ମୁଣ୍ଡିଆ ଦେହରେ ଅଙ୍କିତ ହୋଇଯାଇଛି,

ମୁଣ୍ଡିଆର ମୁଣ୍ଡ ଉପର ଚଳ ଅପେକ୍ଷା ଟିକିଏ ବେଶି ପରିଷ୍କାର ଦିଶୁଛି, ସଡ଼କର ଗଛଗୁଡ଼ିକୁ ଦେଖି ଦେଖି ଗୋପାଳ ଆଗକୁ ଚାଲିଛନ୍ତି, ହଠାତ୍ ରାସ୍ତା ପାଖ ବରଗଛ ମୂଳରୁ ଅସ୍ପଷ୍ଟ ଶବ୍ଦ ଶୁଣାଗଲା । ଗୋପାଳ ଚିନ୍ତାରୁ ମନକୁ ମୁକୁଳେଇ, ଆଖି କାନ ଉଭୟଙ୍କୁ ବରଗଛ ମୂଳ ପ୍ରତି ନିବିଷ୍ଟ କଲେ ।

ଗଛମୂଳରେ କଳା କଳା ହୋଇ ତିନୋଟି ଜନ୍ତୁ ଏଣେ ତେଣେ ବିଚରଣ କରୁଛନ୍ତି । ଗୋପାଳ ଜାଣିପାରିଲେ, ସେଗୁଡ଼ିକ ଭାଲୁ— ଗଛ ମୂଳରେ ବୁଲି ବୁଲି ବରଫଳ ଖାଉଛନ୍ତି ଏବଂ ଖାଇବା ସାଙ୍ଗେ ସାଙ୍ଗେ ସନ୍ତୋଷରେ ଗୋଟିଏ ଗୋଟିଏ ଅସ୍ପଷ୍ଟ ଶବ୍ଦ କରୁଛନ୍ତି । ଗୋପାଳ ଭାଲୁଗୁଡ଼ିକୁ ଖାଇବା କାର୍ଯ୍ୟରେ ବାଧା ନ ଦେବା ଉଦ୍ଦେଶ୍ୟରେ ବାଟ ଭାଙ୍ଗି ଚାଲିଯିବାକୁ ବାହାରୁଛନ୍ତି, ମା-ଭାଲୁଟିର ଦୃଷ୍ଟି ପଡ଼ିଗଲା ଗୋପାଳଙ୍କ ଉପରେ । ମାତୃଜାତିର ପ୍ରକୃତି— କୌଣସି ଅପରିଚିତ ଜନ୍ତୁ ନିକଟରେ ଦେଖିଲେ ସନ୍ତାନମାନଙ୍କ ଉପରେ ବିପଦର ଆଶଙ୍କା କରିବା । ସେହି ଆଶଙ୍କାରେ ମା-ଭାଲୁ ଗୋଟିଏ ଭୀଷଣ ଚିତ୍କାରରେ ବିପଦର ସୂଚନା ଦେଇ, ଗୋପାଳଙ୍କୁ ଆକ୍ରମଣ କରିବାକୁ ଧାଇଁ ଆସିଲା ।

ଦୀର୍ଘ ଜଙ୍ଗଲବାସ ଫଳରେ ଗୋପାଳଙ୍କ ଦେହ ଯେପରି ସୁସ୍ଥସବଳ, ମନ ସେହିପରି ସାହସ ଏବଂ ଦମ୍ଭରେ ବଳୀୟାନ ହୋଇଥାଏ । ସେ ଟିକିଏ ମାତ୍ର ବିଚଳିତ ନ ହୋଇ ମାଡ଼ି ଆସୁଥିବା ଭାଲୁକୁ ପ୍ରତୀକ୍ଷା କରି ରହିଲେ । ଭାଲୁ ହୁଁ ହୁଁ ଶବ୍ଦ କରି ମାଡ଼ି ଆସି ପଛ ଗୋଡ଼ରେ ଠିଆ ହୋଇ ଆଗ ଗୋଡ଼ ଦୁଇଟା ଗୋପାଳଙ୍କ ମୁହଁରେ ରଖି ଠିକ ରାମ୍ପୁଡ଼ିବାର ଉଦ୍ୟମ କଲାବେଳକୁ ଗୋପାଳ ବାଁ ହାତରେ ତାକୁ ଏପରି ଗୋଟିଏ ଠେଲା ଦେଲେ ଯେ, ଭାଲୁ

ବଗୁଣ୍ଡ ଯନ୍ତ୍ରଣାରେ ଚିତ୍କାର କରି ଦୁଇ ହାତ ଦୂରରେ ଯାଇ ଗଡ଼ି ଗଡ଼ି ପଡ଼ିଲା ।

ଗୋପାଳ ମନେ କଲେ, ଭାଲୁର ଆକ୍ରମଣ କରିବାର ପ୍ରବୃତ୍ତି ସାଙ୍ଗ ହୋଇଗଲା । ମାତ୍ର ପଡ଼ିବା ମାତ୍ରେ ଝାଡ଼ିଝୁଡ଼ି ହୋଇ ଉଠି ସେ ପୁଣି ଗୋପାଳଙ୍କ ପ୍ରତି ଅଗ୍ରସର ହେଲା । ଆଉ ଦୟା ଦେଖାଇବା ଅନୁଚିତ ମନେକରି ଗୋପାଳ ମସ୍ତବଡ଼ ଠେଙ୍ଗା ଖଣ୍ଡି ଦୁଇ ହାତରେ ଦୃଢ଼ଭାବରେ ଧରି ଭାଲୁ ଉପରେ ବେଶ ଅସଂଖ୍ୟ ବୃଷ୍ଟି କରିଦେଲେ । ଭାଲୁର ଜ୍ୱର ଆସିଗଲା ଏବଂ ଗୁହୁଁ ଗୁହୁଁ ଜ୍ୱରର 'ଉହୁ-ଉ' 'ଉହୁ-ଉ' ଚିତ୍କାର ମଧ୍ୟରେ ତା'ର ପ୍ରାଣବାୟୁ ଉଡ଼ି ଚାଲିଗଲା ।

ମା' ଭାଲୁଟିର ପ୍ରାଣ ଯିବା ପୂର୍ବରୁ ପିଲା ଯୋଡ଼ିକ ମା' ପାଖେ ଆସି ଲୁଙ୍ଗୁର ପୁଙ୍ଗୁର ହେଲେ ଏବଂ ମା'ର ଦୃଷ୍ଟି ସେମାନଙ୍କ ଆଡ଼କୁ ଫେରାଇବା ନିମନ୍ତେ ନାନା ପ୍ରକାର କରୁଣ ଚିତ୍କାର କଲେ । ମାତ୍ର ମା' ତ ଯାଇଥିଲା ସେ ଦେଶକୁ, ଯେ ଦେଶରୁ ଆଉ ଫେରନ୍ତି ନାହିଁ । ପିଲାଙ୍କର ସମସ୍ତ ବିକଳ କ୍ରନ୍ଦନ ନିଷ୍ଫଳ ହେଲା ।

ଏ ବିକଳ ଗୋପାଳ ସହି ପାରିଲେ ନାହିଁ । ନିଜେ ପିଲାଟି-ମାନଙ୍କର ଏ ଦୁଃଖ ଆଣିଛନ୍ତି, ସେଥିପାଇଁ ପ୍ରାୟଶ୍ଚିତ୍ତ କରିବା ଉଦ୍ଦେଶ୍ୟରେ ଏବଂ କୌତୁକିଆ ପିଲା ଯୋଡ଼ିକ ପ୍ରତି ଆକୃଷ୍ଟ ହୋଇ, ଦୁଇ କାଖରେ ଦୁଇଟିଯାକୁ ଧରି ଫେରିଲେ ବସାକୁ ।

ଛୁରିଗୋଡ଼ିଆ ଅତିଥି ଯୋଡ଼ିକର ଭାରି ଚର୍ଚ୍ଚା ହେଲା । ଆଲମୁନିୟମ ବାସନ ଖଣ୍ଡିକରେ ଗାଡ଼ୁଆରୁ ପାଣି ମୁନ୍ଦାଏ ଆସି ତାଙ୍କ ଆଗରେ ଥୁଆ ହେଲା, ମାତ୍ର ସେମାନେ ପାଣି ପାଖକୁ ଆସିଲେ ନାହିଁ । ବାଡ଼ିରୁ ବାଇଗଣ, ମକା, କଦଳୀ ପ୍ରଭୃତି ସବୁ ପ୍ରକାର ଫଳମୂଳରୁ ଖଣ୍ଡେ ଖଣ୍ଡେ ଆସି ତାଙ୍କ ଆଗରେ ପଡ଼ିଲା, ମାତ୍ର ନୂତନ ଅତିଥିମାନେ ଅତିଥିସେବକଙ୍କୁ ଭଲରୂପେ ଚିହ୍ନିବା ପୂର୍ବରୁ ତାଙ୍କ ଆତିଥ୍ୟରେ

ଲେଶ ମାତ୍ର ଯୋଗ ଦେବେ ନାହିଁ ବୋଲି ସେମାନଙ୍କର ସଙ୍କୋଚ-ଦ୍ୱାରା ସ୍ପଷ୍ଟ ଜଣାଇଦେଲେ ।

ଖାଇବାକୁ ଦେବା ଚେଷ୍ଟା ବିଫଳ ହେବାରୁ ଗୋପାଳ ସେମାନଙ୍କ ରହିବା ଯୋଗାଡ଼ ଆରମ୍ଭ କଲେ । ଘର ଖଣ୍ଡିକର ସନ୍ଧି ବିସନ୍ଧି ସବୁ ଖୋଜି କୌଣସିଠାରେ ସେମାନଙ୍କୁ ରଖିବାର ସୁବିଧା ମିଳିଲା ନାହିଁ । ଟିକିଏ ଚିନ୍ତା କରିବା ପରେ ଗୋଟାଏ ଉପାୟ ମିଳିଗଲା । ଯୋଡ଼ାଏ କିରସିନି ପଟା ବାକ୍ସରେ ବହି ଆସିଥିଲା । ସେହି ବାକ୍ସଯୋଡ଼ିକ ଭଙ୍ଗାଯାଇ ଗୋଟିଏ ବଡ଼ ବାକ୍ସ ତିଆରି ହେଲା । ବାକ୍ସଟି ଖଟ ତଳେ ରହିଲା ଏବଂ ସେହି ବାକ୍ସ ଭିତରେ ଅତିଥି ଦୁଇଟିଙ୍କୁ ତାଙ୍କ ପାଇଁ ସଂଗୃହୀତ ପରିବାପତ୍ର ସଙ୍ଗେ ରଖା ହେଲା ।

ଅତିଥିମାନଙ୍କର ଖାଇବା ରହିବା ବନ୍ଦୋବସ୍ତ କରିସାରି ଗୋପାଳଙ୍କ ଆଖି ନିଜ ଉପରେ ପଡ଼ିଲା । ଛାତି ଉପରେ ଦୁଇ ଚାରି ଟୋପା ରକ୍ତ ପଡ଼ିଛି । କେଉଁଠୁ ଆଉ ରକ୍ତ ଆସିଲା ? ମୁହଁରେ ହାତ ବୁଲାଇ ଦେଲାବେଳକୁ ହାତ ଯାକ ରକ୍ତ । କପାଳରେ ଦୁଇ ଚାରି ଜାଗାରେ ଟିକିଏ ବ୍ୟଥା ଅନୁଭବ କରି ଗୋପାଳ ଗଲେ ଗାଡ଼ୁଆ ପାଖକୁ । ଗାଡ଼ୁଅର ସ୍ଥିର ଜଳର ପ୍ରତିବିମ୍ବରେ ଦେଖିଲେ, ଲଲାଟ ଉପରେ ଚାରି ପାଞ୍ଚ ସ୍ଥାନରେ ଭାଲୁର ନଖ ବାଜି କ୍ଷତ ହୋଇଯାଇଛି । ବିଶେଷ କିଛି ଆଘାତ ନ ହୋଇଥିଲେ ହେଁ କ୍ଷତ ସ୍ଥାନଗୁଡ଼ିକ ଘାରି ଲାଲ ଦିଶୁଥାଏ ଏବଂ ଟିକିଏ ଟିକିଏ ରକ୍ତ ବାହାରି ମୁହଁ ଯାକ ହୋଇ ଯାଇଥାଏ । ଏସବୁ ଦେଖି ସାରି ସେ ମୁହଁକୁ ଗାଡ଼ୁଆର ଥଣ୍ଡା ପାଣିରେ ଭଲ କରି ଦୁଇ ଚାରି ଥର ଧୋଇଦେଲେ । ଟିକିଏ ସୁସ୍ଥ ଲାଗିଲା । ରକ୍ତ ବାହାରିବା ମଧ୍ୟ ବନ୍ଦ ହୋଇଗଲା । ସ୍ନାନାଦି କରି ଖାଇବାର ବନ୍ଦୋବସ୍ତ କରିବାକୁ ଭୁଲି ଯାଇ କ୍ଳାନ୍ତ ଗୋପାଳ ବିଶ୍ରାମ

ଉଦ୍ଦେଶ୍ୟରେ ଖଟ ଉପରକୁ ଗଲେ । ପାଞ୍ଚମିନଟ୍ ଭିତରେ ଗାଢ଼ ନିଦ୍ରା ଆସି ତା'ର ଆରାମଦାୟକ କୋଳରେ ନିବାସିତ ଶ୍ରାନ୍ତ ପ୍ରାଣୀଟିକୁ ଆଶ୍ରୟ ଦେଲା ।

## ବାର

ସନ୍ଧ୍ୟା ଗଡ଼ିଯାଇଛି, ରାତି ଆସି ନାହିଁ । ମାତ୍ର ଚାରିଆଡ଼େ ଅନ୍ଧକାର ବ୍ୟାପି ଗଲଣି । ମୁହଁକୁ ମୁହଁ ଦିଶୁ ନାହିଁ । ପୂର୍ଣ୍ଣିମା ଆଉ ଦିନେ ବାକି । ଶରତ୍‌କାଳୀନ ଚନ୍ଦ୍ର କିରଣରେ ଚାରିଆଡ଼ ହସି ଉଠୁଥାନ୍ତା । ଯୌବନ ମଦୋନ୍ମତ୍ତ ପ୍ରେମିକ ପୂର୍ଣ୍ଣଚନ୍ଦ୍ର ପ୍ରକୃତିଦେବୀଙ୍କୁ କୁଣ୍ଢାଇ ପକାଇବାକୁ ତା'ର କିରଣହାତଗୁଡ଼ିକୁ ବଢ଼ାଇ ଦେଉଥାନ୍ତା । ମାତ୍ର ହିଂସୁକ ମେଘର ଦାଉରେ ପ୍ରେମିକ ପ୍ରେମିକା ବିଚ୍ଛିନ୍ନ ହୋଇଛନ୍ତି ।

ବର୍ଷା ହେବ ହେବ ବୋଲି ଭୟ ଦେଖାଉଛି, ମାତ୍ର ହୋଇ ନାହିଁ । ବର୍ଷା ହୋଇଗଲେ ତ ସୁବିଧା ହୋଇଯାନ୍ତା । ବର୍ଷାର କଠୋରତା ଅନୁପାତରେ ପ୍ରକୃତି ନିଜର ଦେହକୁ କଠୋର କରି ପକାନ୍ତା । ମାତ୍ର ଏ ଭୟ ଦେଖାଇବା ଅବସ୍ଥାଟା ବେଶୀ ଭୟଙ୍କର । ଏହାର ପରିମାପ ନାହିଁ । ଫଳରେ ପ୍ରସ୍ତୁତ ହେବାର ଉପାୟ ନାହିଁ । ପ୍ରକୃତି ତା'ର ସ୍ଥାବର ଜଙ୍ଗମ ସନ୍ତାନମାନଙ୍କୁ ଧରି ମେଘ ଦୃଷ୍ଟିରୁ ରକ୍ଷା ପାଇବା ଉଦ୍ଦେଶ୍ୟରେ ଅନ୍ଧକାରରେ ଘୋଡ଼େଇ ହୋଇ ଚକିତ ଭୀତ ଆଖିରେ ଆକାଶ ଆଡ଼କୁ ଚାହିଁ ରହିଛି ।

ଏ ଅବସ୍ଥାରେ ଟିକିଏ ମାତ୍ର ବିଚଳିତ ନ ହୋଇ ଯୋଡ଼ିଏ ଯୁବକ ଜଙ୍ଗଲ ଭିତର ସରୁ ରାସ୍ତା ଦେଇ ଗଞ୍ଜାମ ବଡ଼ ସଡ଼କରେ ଚାଲିଛନ୍ତି । ରାସ୍ତାଟି ବହୁ ଦିନରୁ ପରିଚିତ, ତେଣୁ ତାକୁ ଦେଖିବାର ଇଚ୍ଛା ନାହିଁ କି ଆବଶ୍ୟକତା ନାହିଁ । ମନ ଭିତରେ କେଉଁ ଦିନୁ ରାସ୍ତାଟିର ମୁହଁ ଦିହ ସବୁ ଆଙ୍କି ହୋଇଯାଇଛି ।

ଆଗେ ଆଗେ ଗୋଟିଏ ଖୁବ୍ ମଜବୁତ୍ କୁକୁର ଚାଲିଛି । ପ୍ରତି ପାଞ୍ଚ ସାତ ମିନିଟରେ ଥରେ ଥରେ ପଛକୁ ଚାହିଁ, ଆଖି କାନ ସାହାଯ୍ୟରେ ଅନୁଗାମୀ ଦୁଇଟି ପଛେ ପଛେ ଲାଗିଛନ୍ତି ବୋଲି ବୁଝି ପୁଣି ଖଣ୍ଡେ ଦୂର ଆଗକୁ ଚାଲି ଯାଉଛି । ତା'ର ଚାଞ୍ଚଲ୍ୟରୁ ଜଣା ଯାଉଛି ଯେପରି ସ୍ୱାଧୀନ ହୋଇଥିଲେ ସେ ଏକା ଦୌଡ଼ରେ ଯାଇ ଘରେ ପହଞ୍ଚନ୍ତା । ରାତିର ଭୀଷଣତାକୁ ତା'ର ଭୟ ନାହିଁ, ମାତ୍ର ବିନା କାରଣରେ ନଜର ଚକ୍‌କଣ ଦେହଟି ବର୍ଷାରେ ଭିଜାଇବାକୁ ଏକାବେଳକେ ଅନିଚ୍ଛା ।

ଯୁବକ ଦୁଇଟି ଆମ ପରିଚିତ ଗୋପାଳ ଓ ଜଗୁ । ଆଜି ଜଗୁଆ ଆସିଥିଲା ଗୋପାଳଙ୍କୁ ଦେଖିବାକୁ, ମାସକ ପାଇଁ ତାଙ୍କର ଆବଶ୍ୟକ ଜିନିଷପତ୍ର ତାଙ୍କ ବସାରେ ରଖିଦେଇ ଯିବାକୁ । ସନ୍ଧ୍ୟା ନିକଟବର୍ତ୍ତୀ ହେବାର ଦେଖି ଗୋପାଳ ଘରକୁ ଫେରିଯିବା କଥା ତା ମନରେ ଜଗାଇଦେଲେ । ଆଜି ଘରକୁ ନ ଯାଇଁ ଗୋପାଳଙ୍କ ସାଙ୍ଗେ ରାତିଟା କଟାଇଦେବା ନିମନ୍ତେ ଜଗୁଆ ଯୁକ୍ତି କରି ବସିଲା । ଯୁକ୍ତିର ଫଳ କିଛି ହେଲା ନାହିଁ, ଗୋପଳ ଜଗୁଆକୁ ତା'ର ନବ ପରିଣୀତା ସ୍ତ୍ରୀଠାରୁ ଦୂରରେ ରଖିବେ ନାହିଁ ବୋଲି ମନେ ମନେ ସ୍ଥିର କରି ତା'ର ଯିବାରେ ଜିଦ୍ ଧରି ବସିଲେ । ଯିବାର ସ୍ଥିର ହେଲା । ବଡ଼ ସଡ଼କ ପର୍ଯ୍ୟନ୍ତ ସାଙ୍ଗରେ ଯାଇ ତା'ପରେ ବସାକୁ ଫେରିବେ ବୋଲି ଗୋପାଳ ଅନୁଗତ ଭୃତ୍ୟ ଓ ଏକମାତ୍ର ସଙ୍ଗୀ ଜଗୁଆର ଆଗେ ଆଗେ ଚାଲିଲେ ।

"ଏ ଅନ୍ଧାର ରାତିରେ ଆଉ କାହିଁକି ଆସୁଚ ? ଏଥର ତମେ ଫେର ।"

"ଅନ୍ଧାର କଣ ଖାଲି ମୋ'ର ପାଇଁ ? ତୁ ଯେ ଯିବୁ, ଚାଲ, ଏ ତ ମୋର ଘର । ମୋତେ ଡର କ'ଣ କରିବ, ଅନ୍ଧାର କଣ

କରିବ ?" କହି ଗୋପାଳ ଗୋଟିଏ ଦୀର୍ଘ ନିଶ୍ୱାସ ଛାଡ଼ିଲେ । ଜଗୁଆ କଥା ଶୁଣିଲା, ନିଶ୍ୱାସ ଶୁଣିଲା ; ମାତ୍ର ଯେଉଁ ହୃଦୟ ଭିତରୁ ଏ କଥା ବାହାରିଲା, ଏ ନିଶ୍ୱାସ ବାହାରିଲା, ତାକୁ ଚିହ୍ନିଲା କି ନାହିଁ କେଜାଣି ?

ଗଞ୍ଜାମ ବଡ଼ ସଡ଼କ ଅଳ୍ପଦୂର ଅଛି । ମେଘ ବୋଧହୁଏ ଭୟ ଦେଖାଇବାର ଚେଷ୍ଟା କରି, ଯୁବକ ଦୁହିଁଙ୍କ ମନରେ କୌଣସି ପ୍ରକାର ଚିନ୍ତା ଆଣିନପାରି ଲଜ୍ଜିତ ହୋଇ କୁଆଡ଼େ ପଳାଇଯିବାକୁ ବାଟ ଖୋଜିଲାଣି । ମେଘର ଏ ଦୁରବସ୍ଥାରେ ଚନ୍ଦ୍ର ଉପରେ ମେଘଅଡ଼ୁଆରୁ ଟିକିଏ ଚୁହିଁ ଚୁହିଁ ମୁରୁକି ମୁରୁକି ହସିବାକୁ ଆରମ୍ଭ କରୁଛି । ଈଷତ ଚନ୍ଦ୍ର ଆଲୋକରେ ଜଗୁଆ ଦେଖିଲା, ଭୂତି କାନ ଡେରି ଠିଆ ହୋଇ ଯାଇଛି । ବିନା କାରଣରେ ତ ଭୂତି ଏପରି ହୁଏ ନାହିଁ ! କାରଣ କଣ ? ଜଗୁଆ ଠିଆ ହେଲା, ଗୋପାଳ ଠିଆ ହେଲେ । ଦୁହେଁ ନିଜ ଠେଙ୍ଗାଟିମାନ ଧରି ଆତ୍ମରକ୍ଷା ପାଇଁ ପ୍ରସ୍ତୁତ ହେଲେ । ଭୂତି କାନକୁ କେଉଁ ଦୂର ଅଜଣା ପ୍ରାଣୀ, ବା ଅନ୍ୟ କିଛି ଉଦ୍ଦେଶ୍ୟରେ ଲମ୍ବେଇ ଦେଇଥାଏ ।

ଭୂତି କଣ ବୁଝିଲା । କାନକୁ ପୁଣି ପଛକୁ କରି ତରବର ହୋଇ ଚାଲିଲା । ଜଗୁଆ ବୁଝିଲା ; ଟିକିଏ ହସି ଦେଇ, ପୁଣି ନିଃଶଙ୍କଚିତ୍ତରେ ବାଟ ଧରିଲା, କହିଲା, "ସଡ଼କରେ ଶଗଡ଼ଟାଏ ଆସୁଛି । ବଳଦଙ୍କ ବେକ ଘଣ୍ଟି ଶବ୍ଦ ଶୁଣି ଭୂତି ଆମକୁ ଡରେଇଦେଲା ।"

ଘଣ୍ଟି ଶବ୍ଦ ବେଳକୁ ବେଳ ନିକଟବର୍ତ୍ତୀ ହେଲା । ଶବ୍ଦରୁ ଜଣା ଗଲା ସଡ଼କ ଉଠାଣିଟା, ବଳଦ ଦୁଇଟି ଖୁବ୍ ଫୂର୍ତ୍ତିରେ ଉଠି ଆସୁଛନ୍ତି । ହଠାତ୍ ଘଣ୍ଟି ଶବ୍ଦ ବନ୍ଦ ହୋଇଗଲା ଏବଂ ଜଣେ କିଏ ଯେପରି ଭୟରେ କାତର ହୋଇ କହିଲା, "ଏ—କି—ଲୋ—ଏ—ଏ—ସେ ।"

ଗୋପାଳ ଆଉ ଜଗୁଆ ସଡ଼କର ଯେଉଁ ଦିଗରୁ ଘଣ୍ଟି ଶବ୍ଦ ଶୁଣାଯାଇଥିଲା, ସେହି ଦିଗରେ ଧାଇଁଲେ । ଗାଡ଼ି ପାଖେ ପହଞ୍ଚି ଯାହା ଦେଖିଲେ ସେଥିରେ ସେମାନେ ସ୍ତମ୍ଭୀଭୂତ ହୋଇଗଲେ — ଜଣେ ଲୋକ ତରବର ହୋଇ ବଳଦଙ୍କୁ ଗାଡ଼ିରୁ ଫିଟାଇ ପକାଇ ଗାଡ଼ି ଭିତରୁ କାହାକୁ ଜଣକୁ ଅକଥ୍ୟ ଭାଷାରେ ଗାଳି ଦେଇ ଦେଇ ଟାଣି ଆଣୁଛି ଏବଂ ଟାଣିବା ସାଙ୍ଗେ ସାଙ୍ଗେ ନିଷ୍ଠୁର ମାଡ଼ ତା'ର ଦେହରେ ଛେଚି ଦେଇ ଯାଉଛି ।

ଏ ଦୁର୍ବ୍ୟବହାରର ପାତ୍ର ବୃଦ୍ଧ କ୍ଷୀଣସ୍ୱରରେ ପ୍ରତିବାଦ କରି କହିଲେ, "ପ୍ୟେ—ପ୍ୟେ—କ—ଅ—ଣ ? ତୁମେ—ମେ କି—ଏ—ଏ ?"

ଘାତକ ଦ୍ୱିଗୁଣିତ ବିକ୍ରମରେ ଆଉ ଦୁଇଗୁଣ ଅଧିକ ମାରି ରାଗରେ କାନ୍ଦ କାନ୍ଦ ହୋଇ କହୁଛି, "ମୁଁ କିଏ ? ପ୍ୟେ କଣ ? ବୁଝିପାରୁ ନାହୁଁ, ମହାଜନ ? କୁଆଡ଼ୁ ବୁଝିବୁ ? ମୋର ସିନା ସ୍ତ୍ରୀ ତୋ ଦାଉରେ ମଲା । ତୋର କଣ ହୋଇଗଲା ଯେ ତୁ ମତେ ଚିହ୍ନିବୁ ? ପ୍ୟେ କଣ ବୁଝିବୁ ? ହଉ, ରହ ରହ—ସବୁ ବୁଝେଇ ଦେଉଛି । ତୋ ପ୍ରାଣଟା ନେଲେ ମୋ ହୃଦୟରୁ ଘା ଶୁଖିବ, ଆଉ ତୁ ଯମଙ୍କ ଦୁଆରେ ଯାଇ ସିଧା ସିଧା ପହଞ୍ଚି ସବୁ ଜାଣିବୁ । ଠିକ୍ ଜାଗାରେ ପାଇଛି, ରହ, ରହ ।"

ଗୋପାଳ ଓ ଜଗୁଆର କ୍ଷଣିକ ସ୍ତମ୍ଭୀଭୂତ ଭାବ ଅପସରି ଯିବା ମଧ୍ୟରେ ଏ ସମସ୍ତ ଘଟଣା ଘଟିଗଲା । ଘାତକର ଶେଷ ଉକ୍ତିର ମର୍ମ ବୁଝି ପଡ଼ିବା ସାଙ୍ଗେ ସାଙ୍ଗେ ଗୋପାଳ ଧାଇଁ ଯାଇ ଘାତକକୁ ଆଟେଙ୍କି ଦେଇ ବୁଢ଼ା ବିଚରାକୁ ଗାଡ଼ି ଭିତରେ ପୁଣି ଶୁଶ୍ରୂଷା କରିବାକୁ ଧାଇଁଗଲେ । ଜଗୁଆ ଘାତକର ସମ୍ମୁଖୀନ ହୋଇ, ତାକୁ ଏ ମତ ଆତତାୟୀ କାର୍ଯ୍ୟରୁ ନିରସ୍ତ କରି ଅଟକାଇ ରଖିଲା ।

ଗୋପାଳ ବୃଦ୍ଧର ନିକଟବର୍ତ୍ତୀ ହେବା ସାଙ୍ଗେ ସାଙ୍ଗେ ସେ ଚିତ୍କାର କରି ଉଠିଲ, "ଏ ପୁଣି କିଏ ? ରକ୍ଷାକର, ରକ୍ଷାକର । ମତେ ଆଉ ମାରନା । ମୋ ପ୍ରାଣ ଗଲାଣି ! ଓହୋ ! ଘୋର କଷ୍ଟ ।"

ଗୋପାଳ ନିଜର ଆଦୌ ମାରିବା ଉଦ୍ଦେଶ୍ୟ ନଥିବା କଥା ଜଣାଇ ବୃଦ୍ଧଙ୍କୁ ଯତ୍ନରେ ଧରି ବଡ଼ ମୁଣ୍ଡ ଆଉଁସି ଆଉଁସି ଲୋକଙ୍କୁ ଚିହ୍ନି ପାରି କହିଲେ, "ଓହୋ ! ମହାଜନେ ! ତମେ ଏତେ ରାତ୍ରିରେ ଏଠାରେ ! ତମକୁ ପୁଣି ମାରିଲା କିଏ ? ଆଗୁ ହଉ ବୁଝିବା, ସେପରି କିଛି ବିଶେଷ ଆଘାତ ଲାଗି ନାହିଁ ଯେ ?"

ବୃଦ୍ଧ କିଛି ନ କହି କରୁଣ ଦୃଷ୍ଟିରେ ସହସା ଆବିର୍ଭୂତ ନିଜ ରକ୍ଷକଙ୍କୁ ଗୃହିଁ ରହିଲେ ଏବଂ ମାଡ଼ ଜୋରରେ ବିଚଳିତ ବୁଦ୍ଧି ବୃତ୍ତିକୁ ଏକତ୍ର କରି ଏକାଗ୍ର ମନରେ ଏ ଚିହ୍ନା ମୁହଁଟି କାହାର, ଚିନ୍ତା କରିବାକୁ ଲାଗିଲେ ।

ବୃଦ୍ଧ ଟିକିଏ ସୁସ୍ଥ ହୋଇ ଗୋପାଳଙ୍କ ସାହାଯ୍ୟରେ ଗାଡ଼ି ଭିତରେ ଯାଇ ଗୋପାଳଙ୍କ କୋଳକୁ ଆଉଜି ବିଶ୍ରାମ କରିବାକୁ ଲାଗିଲେ । ଜଗୁଆର ବନ୍ଧୀ ଜଗୁଆର ଗୋଡ଼ ପାଖେ ବସି କାନ୍ଦି କାନ୍ଦି ନିଜ କାର୍ଯ୍ୟର କାରଣ ତାକୁ ଜଣାଉଥାଏ ; ଭୁତ ଜଗୁଆ ପାଖରେ ଠିଆ ହୋଇଥାଏ । ତାର ହାବଭଙ୍ଗୀରୁ ଜଣା ଯାଉଥାଏ, ପ୍ରଭୁଠାରୁ ଟିକିଏ ସଂକେତ ପାଇଲେ —ସେ ଅପରିଚିତ ଲୋକଟିକୁ ମାଡ଼ ବସନ୍ତା ।

ଏହି ସମୟରେ ଶଗଡ଼ ତଳୁ ଗୋଟିଏ ମାନବ ପ୍ରାଣୀର ଆବିର୍ଭାବ ହେଲା । ସେ ଗାଡ଼ିର ଶଗଡ଼ିଆ । ହଠାତ୍ ତାର ଗାଡ଼ି ଚଳାଇବା କାର୍ଯ୍ୟରେ ଆଗରୁ ଏପରି ଭୀଷଣ ଗୋଟାଏ ଦାଢ଼ିଆ ଲୋକରୂପରେ

ବ୍ୟାଘାତ ଆସି ପହଞ୍ଚିବାର ଦେଖି ସେ ବୁଝିଲ, ନିକଟରେ ଗାଡ଼ି ଚାଲିବାର ଆଶା ନାହିଁ । ବରଂ ବର୍ତ୍ତମାନ ଗାଡ଼ି ଚଳାଇବା ବିଷୟରେ ଜିଦ୍ କଲେ ବା ସମ୍ମୁଖବର୍ତ୍ତୀ ଉଭୟଙ୍କର ଲୋକ ଆଗରେ ବାଧା ଦେବାନିମନ୍ତେ ଠିଆ ହେଲେ ନିଜର କ୍ଷୀଣ ପରିଶ୍ରମରୁଗ୍ଣ ଶରୀରରେ ଆଘାତ ଲଗିବାର ସମ୍ଭାବନା, ପୁରା ୧୬ଅଣା । ସୁତରାଂ ଅପରିଚିତ ଘାତକ ବଳଦ ଫିଟାଇ ଯାଇବା ପୂର୍ବରୁ ଶଗଡ଼ିଆ ଶଗଡ଼ ତଳେ ଆଶ୍ରୟ ନେଲ । ଅପରିଚିତ ଆକ୍ରମଣକାରୀର ଶଗଡ଼ିଆ ପ୍ରତି ଆଦୌ ଦୃଷ୍ଟି ନ ଥିଲ । ଏତେ ଅଜାଣତରେ, ଏତେ ଅଲକ୍ଷିତ ଭାବରେ ଶଗଡ଼ିଆ ନିଜ ଆତ୍ମରକ୍ଷା ସମସ୍ୟାର ସମାଧାନ କରିଥିଲ ଯେ,ସେ ଯଦି ଆକ୍ରମଣର ଉଦ୍ଦେଶ୍ୟ ହୋଇଥାନ୍ତା, ତେବେ ସୁଦ୍ଧା ଆକ୍ରମଣକାରୀ ଖୁବ୍ ଗୁଡ଼ାଏ ନ ଖୋଜି ତାକୁ ପାଇ ପାରିନଥାନ୍ତା । ପ୍ରଭୁଙ୍କ ଉପରେ ମାଡ଼ ହେଉଥିଲ ବେଳେ ସେ ମହାପ୍ରଭୁଙ୍କୁ ଡାକୁଥାଏ—“ମହାପ୍ରଭୁ ! ଲୋକଟିର ଯାବୁ ରାଗ ମହାଜନଙ୍କ ଉପରେ ଶୁଝି ଯାଉ । ମୋ ପାଇଁ କିଛୁ ବାକି ନ ରହୁ ।”

ହଠାତ୍ ଆଉ ଦୁଇଜଣ ଆଗନ୍ତୁକ ଆସି ପଡ଼ିଲେ, ଶଗଡ଼ିଆର ଭୟ ହେଲ, ବୋଧ ହୁଏ ଏଥର ତା’ ପିଠିକୁ ତଲବ କରାଯିବ । ଭାଗ୍ୟକୁ ସେପରି କିଛି ହେଲ ନାହିଁ । ମହାଜନ ବି ମାଡ଼ରୁ ରକ୍ଷା ପାଇଲେ । ଶଗଡ଼ିଆ ମାଡ଼ର ପୁନରାବିର୍ଭାବ କେଜାଣି ହୋଇପାରେ ବୋଲି ସବୁ ସ୍ଥିର ଥାଇ ପଡ଼ିଯିବା ପରେ ସୁଦ୍ଧା ପ୍ରାୟ ୧୫ମିନଟ୍ ପର୍ଯ୍ୟନ୍ତ ଶଗଡ଼ ତଳେ ଅପେକ୍ଷା କରି ଶେଷରେ ବାହାରି, ଗୋଳମାଳ ଫଳରେ ଟିକିଏ ଦୂରକୁ ଚାଲି ଯାଇଥିବା ବଳଦ ଦୁଇଟିଙ୍କ ଉଦ୍ଦେଶ୍ୟରେ ଆଖି ବୁଲାଇଲ ଏବଂ ବଳଦ ଯୋଡ଼ିକୁ ହାତ କରି ପଚାରିଲ, “ସାଆନ୍ତ, ଗାଡ଼ି ଯୋଚିବି ?”

ଗୋପାଳ ମହାଜନଙ୍କ ପକ୍ଷରୁ ଉତ୍ତର ଦେଲେ, "ନା, ଏକ୍ଷଣି ଗାଡ଼ି ଯୋଗ୍ୟ ହେବ ନାହିଁ, ରହ । ଜଗୁଆ ! ସେ ଲୋକଟି କିଏ ତାକୁ ଇଆଡ଼େ ଆଣ ।"

ମହାଜନ ହଠାତ୍ ଏ ନାମଟା ଶୁଣି କହିଲେ, "ଏଁ, ଜଗୁଆ ! କି' ଜଗୁଆ ?"

ଗୋପାଳ— ଆପଣଙ୍କ ଗ୍ରାମର ଜଗୁଆ । ଆପଣ ତାକୁ ଚିହ୍ନନ୍ତି । ସେ ମୋ ପାଖକୁ ଆସିଥିଲା । ତାର ଯୋଗୁଁ ହିଁ ଆପଣ ଆଜି ରକ୍ଷା ପାଇଲେ । ସେ ମୋ' ପାଖକୁ ଆଜି ନ ଆସିଥିଲେ ଏବଂ ଶବ୍ଦ ବାରି ସେ ଏ ଆଡ଼କୁ ଆଗ ନ ଧାଇଁଥିଲେ, ଆଜି କଣ ହୋଇଥାନ୍ତା, କେଜାଣି ?

ଜଗୁଆ ଅସିଲାରୁ ବୁଢ଼ା କ୍ଷୀଣ ଚନ୍ଦ୍ରାଲୋକରେ ତାକୁ ସ୍ପଷ୍ଟ ଚିହ୍ନି ପାରିଲେ ଏବଂ ଚିହ୍ନି ପାରିବା ସାଙ୍ଗେ ସାଙ୍ଗେ ପୂର୍ବ ସ୍ମୃତି ଜାଗି ଉଠିଲା । ମନେ ପଡ଼ିଗଲା ସେଦିନ, ଯେଉଁ ଦିନ ଜଗୁଆ ବାପଟଙ୍କା ପରିଶୋଧ କରିବା ପାଇଁ ଆସିଥିଲା ଓ ସେ ବିଚରା ଉପରେ ଡେଇଁ ଦେଲେ ଦୁଇଶହ ପଚିଶ ଟଙ୍କା । ଆଖି ଆଗରେ ଦିଶିଗଲା ଜଗୁଆ ବାପର ସେ ଦିନର 'ହା ହତୋଽସ୍ମି' ଭାବରେ ପୂର୍ଣ୍ଣ ଚିନ୍ତାଦଗ୍ଧ ମୁଖ । ସେହି ଦିନଠାରୁ ତାଙ୍କର ଜଗୁଆ ମା ଓ ଜଗୁଆ ସାଙ୍ଗେ ଯେ ସବୁ ବ୍ୟବହାର ହୋଇଛି, ସବୁ ମନେ ପଡ଼ିଗଲା । ମହାଜନ ଲଜ୍ଜାରେ, ଆତ୍ମଗ୍ଲାନିରେ ତୁନି ହୋଇ ରହିଲେ ।

ଗୋପାଳ ଆଗରେ ଘାତକଙ୍କୁ ଦେଖି ପଚାରିଲେ, "କି ହୋ, ତୁମେ କିଏ ? କାହିଁକି ଏ ପାପ କରୁଥିଲ ? ବିନା କାରଣରେ ଏପରି ପଥିକଙ୍କୁ ଆକ୍ରମଣ କରିବା କିପରି ଈଶ୍ୱର ଏବଂ ସରକାର—ଉଭୟଙ୍କ ଦୋଷାବହ, ତାହା କଣ ତୁମେ ଜାଣ ନାହିଁ ?"

ଘାତକ—ବାବୁ, ହଁ, ମୁଁ ଜାଣିଥିଲି, ବିନା କାରଣରେ କାହା ଦେହରେ ହାତ ଲଗେଇବା ଅନ୍ୟାୟ । ଜାଣିଥିଲି, ବୃଥାରେ କାହାକୁ ସାଧିଲେ, ପରମେଶ୍ୱର ସାଧନ୍ତି, ସରକାର ବି ଦଣ୍ଡ ଦିଅନ୍ତି । କିନ୍ତୁ ମୁଁ ତ ବୃଥାରେ କାହା ଉପରେ ହାତ ଉଠାଇନଥିଲି । ଏ ମହାଜନ ମୋ' ପ୍ରତି ଯାହା କରିଛି, ସେ ଦୃଷ୍ଟିରେ ବିଗ୍ଭରିଥିଲି, ସରକାର ମୋ କାର୍ଯ୍ୟ ପାଇଁ ମୋତେ ଦଣ୍ଡ ଦିଅନ୍ତୁ ପଛେ ପରମେଶ୍ୱର ମୋତେ ଦୋଷୀ କରିବେ ନାହିଁ । କିନ୍ତୁ ଆଜି ବୁଝିଲି, କାରଣ ଥାଉ ବା ନଥାଉ, ଅନ୍ୟ ଉପରେ ହାତ ଲଗାଇବା ଅନ୍ୟାୟ । ବାବୁ, ତମ ସାଙ୍ଗ ଏଇ ଲୋକଟି ଠାରୁ ( ଜଗୁଆକୁ ଦେଖାଇ ) ଆଜି ଯାହା ଜ୍ଞାନ ପାଇଛି, ସେଥିରେ ମୋ'ର ଆଖି ଫିଟିଛି । ମୁଁ ବୁଝିଛି, ମୋ ଉପରେ ହୋଇଥିବା ଅନ୍ୟାୟର ମୁଁ ଯେ ପ୍ରତିକାର କରୁଥିଲି, ପରମେଶ୍ୱର ସେଥିରେ ରାଜି ନୁହନ୍ତି । ଯଦି ଏହା ପରମେଶ୍ୱରଙ୍କର ଇଚ୍ଛା ହୋଇଥାନ୍ତା ତେବେ ସେ ଆପଣଙ୍କୁ ପଠାଇ ମୋ କାର୍ଯ୍ୟରେ ବାଧା ଦିଆଇଥାନ୍ତେ କାହିଁକି ? ଏହି ଗୋଟିକ କଥାରୁ ମୁଁ ସବୁ ବୁଝିଛି । ମୋର ମହାଜନ ଉପରେ ଆଉ ଅହନ୍ତା ଭାବ ନାହିଁ ।"

ଗୋପାଳ ଏକଥା ଶୁଣି ଟିକିଏ ବିସ୍ମିତ ହେଲେ । ଯେଉଁ ଲୋକ ଏପରି ଭାବରେ କଥାବାର୍ତ୍ତା କରିପାରେ, ସେ ପୁଣି କିପରି ଏଡ଼େ ବଡ଼ ପୈଶାଚିକ କାର୍ଯ୍ୟ କରିବାକୁ ବାହାରିଥିଲା ? ଅବଶ୍ୟ ଯଥେଷ୍ଟ କାରଣ ଥିବାରୁ ସେ ଏପରି କାର୍ଯ୍ୟ କରିବାକୁ ବାହାରିଥିବ । ତେବେ ଏତେ ଅଳ୍ପ କ୍ଷଣରେ ତା'ର ଏପରି ଅଦ୍ଭୁତ ପରିବର୍ତ୍ତନ ହେଲା କିପରି ? ମୂର୍ଖ ମଫସଲିଆ ଲୋକ କେଡ଼େ ବେଗେ କଥା ବୁଝି ପାରନ୍ତି, ତାହା ଗୋପାଳ ଜାଣିନଥିଲେ । ତାଙ୍କର ସନ୍ଦେହ ହେଲା, ଏ ଲୋକ ବର୍ତ୍ତମାନ ଯାହା କହୁଛି ତାହା ତା'ର ଛଳନା,

ନା ପ୍ରକୃତ ହୃଦୟର ଭାବ । ଦଣ୍ଡବିଧି ଆଇନର କବଳରୁ ରକ୍ଷା ପାଇବା ନିମନ୍ତେ ସେ ଏପରି ଉପାୟ ଅବଲମ୍ବନ କରିଛି, ନା ପ୍ରକୃତରେ ତା'ର ମନର ପରିବର୍ତ୍ତନ ହୋଇଛି । ଗୋପାଳ କିଛି ଠିକ୍ ନ କରିପାରି ଟିକିଏ ଚିନ୍ତିତ ହେଲେ ।

ଗୋପାଳ ତୁନି ହେବାର କାରଣ ଜଗୁଆ ବୁଝି ପାରି କହିଲା, "ବାବୁ, ସେ ଯାହା କହୁଛି ସତ । ବାସ୍ତବିକ ବିପଦରେ ପଡ଼ି ତା' ମନ ପିତା ହୋଇଯାଇଥିଲା । ସେ ବହୁତ ସହିଛି । ସେ ଯାହା ସହିଛି, ମୁଁ ସେତେ ସହିପାରନ୍ତି କି ନାହିଁ କେଜାଣି ! ବାବୁ, ପ୍ରକୃତରେ, ତାର ବର୍ତ୍ତମାନ ଆଉ ରାଗ ନାହିଁ, କି ଅହଙ୍କାର ଭାବ ନାହିଁ ।"

ଗୋପାଳ କହିଲେ—"ଯାହାହେଉ ତା'ର ମନର ପରିବର୍ତ୍ତନ ଆସିଛି, ଭଲ କଥା ! ଈଶ୍ୱର ଏ କଥାର ବିବେଚନା କରିବେ । ମନ ଭିତରେ ଯେଉଁ ପ୍ରତିହିଂସାର ନିଆଁ ଜଳୁଥିଲା, ସେଥିପାଇଁ କ୍ଷମା କରିବେ । ଆଜି ସେ ଯାହା କରିବାକୁ ବସିଥିଲା, ସେଥିପାଇଁ ଈଶ୍ୱର ତାକୁ କ୍ଷମା କରି ପାରନ୍ତି ; ମାତ୍ର ସରକାରଙ୍କ ନ୍ୟାୟ ତ ସେପରି ନୁହେଁ । ମହାଜନେ ଯଦି ନିଜେ ତାକୁ କ୍ଷମା କରି ଏ ବିଷୟର ଉତ୍‌ଥାପନ ନ କରନ୍ତି, ତାହା ହେଲେ ସବୁ ଭଲ, ମାତ୍ର ମହାଜନେ ମକଦ୍ଦମା ପ୍ରଭୃତି କଲେ, କଥା ଅନ୍ୟ ପ୍ରକାର ହେବ ଏବଂ ବହୁ ଦିନରୁ ପ୍ରତିହିଂସା ନେବା ପାଇଁ ମନସ୍ଥ କରି ଆଜି ଏପରି ଅବସ୍ଥାରେ ଆକ୍ରମଣ କରିଥିବା ହେତୁ ମକଦ୍ଦମା ବଡ଼ ଗୁରୁତର ହୋଇ ପଡ଼ିବ । ମହାଜନଙ୍କର ଇଚ୍ଛା । ସେ ମାରି ପାରନ୍ତି, ତାରି ପାରନ୍ତି । ମହାଜନେ, ମୋର ଅନୁରୋଧ, ତା'ର ପ୍ରକୃତ ଅନୁତାପ ଆସିଲାଣି ବୁଝି ଆପଣ ତାକୁ କ୍ଷମାକରିବେ ।" ଅପରିଚିତ ଲୋକଟି

କହିଲ, "ମହାଜନେ, ସତେ ମୁଁ ତୁମ ପ୍ରତି ବଡ଼ ଅନ୍ୟାୟ କରୁଥିଲି । ତୁମ ଇଚ୍ଛା—ନା, ମୋତେ ଯେଉଁ ଦଣ୍ଡ ଦେବ ଦିଅ, ମୁଁ ଦଣ୍ଡ ପାଇ ମୋ ପାପର ପ୍ରାୟଶ୍ଚିତ୍ତ କରିବ ।"

ବାସୁଦେବ ଏତେ ବେଳଯାଏ ତୁନି ହୋଇ ସବୁ ଶୁଣୁଥିଲେ । ତାଙ୍କ ମୁଣ୍ଡ ଘୂରି ଯାଉଥାଏ—ଅବଶ୍ୟ ମାଡ଼ର ପ୍ରତାପରେ ନୁହେ, ଏମାନଙ୍କ କଥାବାର୍ତ୍ତାର ଗତି ଦେଖି । ଏ କିଏ ? ତାର ରକ୍ଷକ କିଏ ? ଜଗୁଆ—ଯେଉଁ ଜଗୁଆର ବାପ ମାଙ୍କୁ ସେ ବର୍ଷ ବର୍ଷ ଧରି ହରକତ କରିଛନ୍ତି, ଯେଉଁ ଜଗୁଆଠାରୁ ସେ ନିତାନ୍ତ ଅଳ୍ପ ଟଙ୍କା ପାଇଁ ବସ୍ତିର ସମ୍ପତ୍ତି ଆତ୍ମସାତ୍ କରି ଆଜି ତାକୁ ଭୂ ସମ୍ପତ୍ତିଶୂନ୍ୟ କରିଛନ୍ତି ! ତାପରେ ଗୋପାଳ—ଗୁଡ଼ାଏ ଟଙ୍କା ଦାବିକରି ତାଙ୍କୁ ଖଣ୍ଡେ ଜନମାନବଶୂନ୍ୟ ଜଙ୍ଗଲ ଦେଇଛନ୍ତି, ତାଙ୍କଠାରୁ ତ ବିଶେଷ କିଛି ଉପକାର ଆଶା କରିବାର ନୁହେଁ । ବାସୁଦେବ ଜାଣନ୍ତି—ଯେ ଯାହାଠାରୁ ଉପକାର ପାଏ, ସେ ତା' ପାଇଁ ଉପକାର କରିପାରେ । ମାତ୍ର ଏ କିଏ ? ବାସୁଦେବଙ୍କ ବିଚଳିତ ମସ୍ତିଷ୍କରେ ଏ ଶେଷ କଥାଗୁଡ଼ିକ ପହଞ୍ଚିଲାରୁ ତାଙ୍କର ସମସ୍ତ ପୂର୍ବ ସଂସ୍କାର କୁଆଡ଼େ ଉଭେଇଗଲା । ସେ ପିଲା ପରି ଭେ ଭେ ହୋଇ ଛାଡ଼ି କାନ୍ଦିଲେ । ଓଃ, ସେ କାନ୍ଦ ! ହୃଦୟ ଭିତରର ସତେ ଅବା ଯେପରି ଗୋଟାଏ ଉଷ୍ଣ ପ୍ରସ୍ରବଣର ଅନେକ ଦିନର ଅବରୁଦ୍ଧ ଦ୍ୱାର ଆଜି ହଠାତ୍ ଫାଟି ଯିବାରୁ ଭିତରର ସମସ୍ତ ଆବେଗ ଉଷ୍ଣ ଲୋତକ ଆକାରରେ ବାହାରକୁ ବାହାରି ଆସିଲା । ଏ ବେଗ, ଏ ସ୍ରୋତ ବନ୍ଦ କରିବ କିଏ ? ଗୋପାଳ କୌଣସି ବାଧା ନ ଦେଇ ବୃଦ୍ଧଙ୍କ ଆବେଗର କଥଞ୍ଚିତ ଉପଶମ ହେବା ନିମନ୍ତେ ଅପେକ୍ଷା କରି ରହିଲେ ।

କିଛିକ୍ଷଣ ପରେ ବୃଦ୍ଧ ଟିକିଏ ପ୍ରକୃତିସ୍ଥ ହୋଇ କହିଲେ,

"ମତେ କ୍ଷମା କର ଆପଣମାନେ ସମସ୍ତେ । ମଧୁ, ତୁମକୁ ମୁଁ କଣ କ୍ଷମା କରିବ, ତୁମେ ମୋତେ କ୍ଷମା କଲ, ଏଥିରେ ମୁଁ ଆଶ୍ଚର୍ଯ୍ୟ ହେଉଛି ! ମୁଁ ଜାଣେ, ମଧୁ ! ମୋର ଯୋଗୁଁ ତୁମର ସର୍ବନାଶ ହୋଇଛି । ମୁଁ ତୁମର ସବୁ ସମ୍ପଦ କାଢ଼ି ନେଇଛି । ମୋରଯୋଗୁଁ ତୁମ ସ୍ତ୍ରୀ ମରିଛି । ମୁଁ ତୁମ ପିଲାଟିମାନଙ୍କୁ ଅଭାବରେ ସଢ଼େଇ ସଢ଼େଇ ମାରିଛି । ଏ ସବୁ ପାପ ମୋର ଫଳୁଛି, ମଧୁ ! ଓହୋ, ମୁଁ କେଡ଼େ ପାପିଷ୍ଠ, ମୁଁ କେଡ଼େ ଅଧମ ।"

ମହାଜନ ଏତିକ କହି ଅନୁତାପ ଲୁହରେ ଦଗ୍ଧହୃଦୟକୁ ଟିକଏ ଶୀତଳ କରି ଧୀରେ ଧୀରେ ଉଠି ମଧୁର ଗୋଡ଼ ଧରି ପକାଇ ପୁଣି ଆଉ ଥରେ ହୃଦୟର ଆବେଗରେ କାନ୍ଦି ପକାଇଲେ ।

ପ୍ରାୟ ଅଧରାତିକୁ ମଧୁ ଗୋପାଳଙ୍କ ସଙ୍ଗେ ତାଙ୍କ ଜଙ୍ଗଲ ଘରେ ରାତିଟି କଟାଇବାର ଅନୁମତି ପାଇ ତାଙ୍କ ସାଥିରେ ଜଙ୍ଗଲ ଭିତରକୁ ବାହାରିଲେ ଏବଂ ବାସୁଦେବଙ୍କ ପାଖେ ଗାଡ଼ିଭିତରେ ବସି ଜଗୁଆ ତାଙ୍କର ପରିଚର୍ଯ୍ୟା କରି ଗାଁକୁ ଗଲା । ବିଚରା ଭୃତ୍ୟ କାହାଠାରୁ କିଛି ପୁରସ୍କାର ନ ପାଇ ସଙ୍ଗଶୂନ୍ୟ ହୋଇ ଶଗଡ଼ ପଛେ ପଛେ ଗୃଲଲା । ତା' ମନରେ ଏଥିରେ ଦୁଃଖ ନାହିଁ ; ସେ ତା କର୍ତ୍ତବ୍ୟ କରିବା ଜାଣେ । କର୍ତ୍ତବ୍ୟ କରି ପ୍ରଭୁକୁ ଖୁସି କରି ପାରିଲେ ସବୁ ହେଲା । ତା'ର ପୁରସ୍କାର ପାଇଁ ପ୍ରୟାସ ନାହିଁ, କି ପ୍ରୟୋଜନ ନାହିଁ ।

## ତେର

ଗୋପାଳଙ୍କର ଗୋଟାଏ ପ୍ରତିଜ୍ଞା ଆଜି ଭାଙ୍ଗିଲା । ତାଙ୍କର ନିର୍ଜନ ବାସରେ ଆଉ କାହାରିକୁ ଅଂଶୀଦାର କରିବେ ନାହିଁ ବୋଲି

ସ୍ଥିର କରି ସେ ଜଗୁଆକୁ ସନ୍ଧ୍ୟା ଗଡ଼ିଗଲେ ସୁଦ୍ଧା ଆଉ ରଚାଇ ଦେଇ ନ ଥିଲେ । ଆଜ ସେଇ ପ୍ରତିଜ୍ଞାଟା ଏପରିଭାବରେ ମନକୁ ମନ ଭାଙ୍ଗି ଯିବ ବୋଲି ସେ ତ ଜାଣି ନ ଥିଲେ ! ପ୍ରଥମେ କଠିକ ଘୁଡ଼ିଲା-ବେଳେ ସେ ସ୍ଥିର କରିଥିଲେ, କାହାରି ସଙ୍ଗେ କୌଣସି ସମ୍ବନ୍ଧ ରଖିବେ ନାହିଁ । ଜଗୁଆର ପରିବାର କାହୁଁ ଆସି ତାଙ୍କ ସଙ୍ଗେ ସମ୍ବନ୍ଧ ସ୍ଥାପନ କରି ବସିଲେ, ବାଧହୋଇ ପ୍ରତିଜ୍ଞାର କଠୋରତାକୁ ଟିକଏ ଶିଥିଳ କରିବାକୁ ପଡ଼ିଲା । ଆଜ ସେ ପ୍ରତିଜ୍ଞା ଏକାବେଳକେ ଉଡ଼ିଗଲା । ମଧୁ ତାଙ୍କ ସଙ୍ଗେ ଜଙ୍ଗଲରେ ରାତିଏ ଆଶ୍ରୟ ପାଇଁ ଯେତେବେଳେ କହିଲା ସେତେବେଳେ ଗୋପାଳଙ୍କ ମନ ହେଲା ନାହିଁ, ନିଜର ପ୍ରତିଜ୍ଞାର ସୂଚନା ଦେଇ ତାକୁ ବହିଷ୍କାର କରି ଦେବା ନିମନ୍ତେ । ମଧୁ ଭିତରର ଆଜ ଯେ ପରିବର୍ତ୍ତନ ହୋଇଛି ତହିଁରେ ବିସ୍ମିତ ଗୋପାଳ ପରିବର୍ତ୍ତନର ସ୍ରୋତ ରାତିଟିକୁ ନିଜର ସୌହାର୍ଦ୍ଦ୍ୟ ଜଳରେ ଟିକଏ ବଳୁଆ କରିବା ନିମନ୍ତେ ଇଚ୍ଛାକରି ଆନନ୍ଦରେ ସମ୍ମତ ହେଲେ । ଏ ଇଚ୍ଛା ସଙ୍ଗେ ସଙ୍ଗେ ମଧୁର ଇତିହାସଟି ପୂର୍ଣ୍ଣ ଜାଣିବା ନିମନ୍ତେ କୌତୁହଳ ଟିକଏ ଯେ ନଥିଲା ତାହା ନୁହେଁ ।

ଅତିଥିଟି ସଙ୍ଗେ ଗୋପାଳ ଆସି ଘରେ ପହଞ୍ଚିଲା ବେଳକୁ ଛାଲୁପିଲା ଦୁଇଟି ତାଙ୍କୁ ନ ଦେଖି ଟିକଏ ବ୍ୟାକୁଳ ହୋଇ ଯାଇଥାନ୍ତି । ତାଙ୍କର କଥା ଟିକଏ ବୁଝା ବୁଝି କରି, ଗୋପାଳ ଦ୍ୱିପଦ ଅତିଥିଙ୍କର ସତ୍କାରରେ ଲଗିଗଲେ । ମଧୁ ଯାହା ପାଇଲା, ତାକୁ ଅତି ଆନନ୍ଦ, ଅତି ଆଗ୍ରହରେ ଖାଉ ଖାଉ କହିଲା, "ବାବୁ, ଆଜ ଅନେକ ଦିନ ପରେ ମୁଠେ ଭଲ ଖାଇବାକୁ ପାଇଲି ।"

ଗୋପାଳ—ଏ ପୁଣି ଭଲ କଣ ?

ମଧୁ—ନା, ଜିନଷ ସେପରି ଦୁଷ୍ପ୍ରାପ୍ୟ ବୋଲି କହୁ ନାହିଁ ଯେ । ଜିନଷ ଦୁଷ୍ପ୍ରାପ୍ୟ ହେବା ସଙ୍ଗେ ଖାଇବା ତୃପ୍ତିର କିଛି ଯାଏ ଆସେ ନାହିଁ । ମନ ଭିତରେ ଆନନ୍ଦ ଥିଲେ ଯେ କୌଣସି ଜିନଷ ଖାଅ ଭଲ ଲାଗିବ । ମୁଁ ଗଲା କେତେ ବର୍ଷ ହେଲା ପେଟ ପୂରାଇ ପୁଞ୍ଜେ ଖାଇବାକୁ ଅବସର ପାଉନଥିଲି ।ମୋର କ୍ଷୁଧା ଏକବାରେ ନଥିଲା – ପେଟଯାକ ଏପରି କି ଶିରା ପ୍ରଶିରା ଭିତରେ ଚିନ୍ତା ପୂରି ରହିଥିଲା; ଭାତ ଯାନ୍ତା କୁଆଡ଼ିକି ? ଆଜି ଆପଣଙ୍କ ଅନୁଗ୍ରହରୁ ସେସବୁ ଚିନ୍ତା ଗଲା, ମୋର ପୁନର୍ଜନ୍ମ ଲାଭ ହେଲା ।

ଗୋପାଳ—ତୁମର ପରିବର୍ତ୍ତନ ଅବଶ୍ୟ ହେଲା, ସୁଖର ବିଷୟ । ତେବେ ମୋ ଯୋଗୁଁ ହେଲା ବୋଲି କହି ମୋତେ ଗୁଡ଼ାଏ ବୃଥା ପ୍ରଶଂସା କରୁଛ ।

ମଧୁ—ବୃଥା ନୁହେଁ ବାବୁ ! ଆପଣଙ୍କର ପଦେ କଥା ଅସଲ ସମୟରେ ଶୁଣି ସବୁ ହେଲା । ଦୁଇଦିନ ଆଗରୁ ଏହି କଥା କହିଥିଲେ ମୋ ମନରେ ବିଶେଷ କିଛି ଭାବ ଆସି ଥାନ୍ତା କି ନାହିଁ କେଜାଣି ? ମାତ୍ର ଠିକ୍ ବହୁଦିନର ଅଭିଳାଷ ପୂରିବାବେଳକୁ ଆପଣଙ୍କଠାରୁ ବାଧା ପାଇ ଏବଂ ଉପଦେଶ ଶୁଣି ମୋର ଜୀବନ ସାର୍ଥକ ହୋଇଛି । ବର୍ତ୍ତମାନ ମୁଁ ବୁଝୁଛି ଆପଣଙ୍କ ବାଧା ଯୋଗୁଁ ମୁଁ ମୋର ଅତ୍ୟାଚାରୀ ଉପରେ ଯେ ପ୍ରକାର ପ୍ରତିହିଂସା ନେଇପାରିଛି ଆପଣ ବାଧା ଦେଇ ନ ଥିଲେ ତାକୁ ଜୀବନରେ ମାରି ଦେଇଥାନ୍ତି ନିଶ୍ଚୟ; ମାତ୍ର ଏଭଳି ଶ୍ରମ ସାର୍ଥକ ହୋଇ ନ ଥାନ୍ତା । ଅସଲ ପ୍ରତିହିଂସା ନଆ ହୋଇ ପାରି ନଥାନ୍ତା ।

ଖିଆ ପିଆ ସରିଲା । ଖଣ୍ଡିଏ ବୋଲି ଘର, ଗୋଟିଏ ବୋଲି ଶେଯ, ବାଧହୋଇ ଦୁହେଁ ଏକ ସଙ୍ଗେ ଶୋଇଲେ । ମଧୁର ଜୀବନ

ବୃତ୍ତାନ୍ତ ଶୁଣିବା ପାଇଁ ଗୋପାଳ ଖୁବ୍ କୁତୂହଳୀ ହୋଇଥାନ୍ତି, କିନ୍ତୁ ପଚାରୁ ନ ଥାନ୍ତି—କେଜାଣି ଜୀବନବୃତ୍ତାନ୍ତ କହିବାରେ ମଧୁର ଆପତ୍ତି ଥିବ, କେଜାଣି ସେ ତା' ଇତିହାସ ଗୋପନୀୟ ରଖିବା ପାଇଁ ଇଚ୍ଛୁକ ଥିବ । କିଛି ସମୟ ପରେ ମଧୁ ନିଜେ କହିଲା— ବାବୁ, ମୋ କଥା ସବୁ ତୁମେ ଶୁଣି ନାହିଁ ?"

ଗୋପାଳ—ନା, ଶୁଣିବାକୁ ଇଚ୍ଛା ଅଛି ଯେ, ତୁମେ କହିବ କି ନାହିଁ ବୋଲି ଭରସି ପଚାରୁ ନ ଥିଲି ।

ମଧୁ—କଣ, ଆପଣଙ୍କର ମୋ ପାଖରେ ପୁଣି ସଂକୋଚ କଣ ? ଆପଣଙ୍କଠାରେ ମୋ'ର ବା ଗୋପନୀୟ କଣ ଅଛି ? ଆପଣ ଯେ ମୋର ଗୁରୁ ।

ଏହା କହି ମଧୁ ଆରମ୍ଭ କଲା —

ମୋ ଘର ଏଠାରୁ ଅଳ୍ପଦୂର ଶରଧାପୁରଠାରେ । ମୁଁ ଥିଲି ଶରଧାପୁରର ସବୁଠାରୁ ବଡ଼ ଧନୀ, ଜମି ୧୦ । ୧୫ ବାଟି ଥିଲା । ଟଙ୍କା ପଇସା ବି ଥିଲା । ମୋର ଅଭାବ ନ ଥିଲା କାହାର ଦ୍ୱାରସ୍ଥ ହେବାର କୌଣସି ପ୍ରୟୋଜନ ନ ଥିଲା । ମୁଁ ଅଭାବର ସୃଷ୍ଟି କଲି । ମନେକଲି ଗଞ୍ଜେଇ ଅଫିମ ଟିକିଏ ଟିକିଏ ସେବା କଲେ ଯାଇ ମୋର ସମ୍ପତ୍ତିର ଉପଯୁକ୍ତ ବ୍ୟବହାର ହେବ । ପାଖରେ ଯାହା ଟଙ୍କା ଥିଲା ସେତିକ ସରିଲା । ସେତିକବେଳେ ବାସୁ ମହାଜନଙ୍କ ସହିତ ମୋର ପରିଚୟ । ମୁଁ ପ୍ରଥମେ ତାଙ୍କ ପାଖେ ଟଙ୍କାର ପ୍ରଶ୍ନ ଉଠାଇଲି ମାତ୍ରେ ସେ ଏତେ ଆଗ୍ରହରେ ମୋତେ ଟଙ୍କା ଦେବାକୁ ମଙ୍ଗିଗଲେ ଯେ ମୋର ବାସ୍ତବିକ୍ ମନେ ହେଲା ବାସୁଦେବହିଁ ମୋର ଶ୍ରେଷ୍ଠ ବନ୍ଧୁ । ମୋର ସ୍ତ୍ରୀ ମୋର ଏ ଗତିରେ ଟିକିଏ ବ୍ୟସ୍ତ ହେଉଥିଲେ

ସତ, ତେବେ କେଜାଣି ମୁଁ ବିରକ୍ତ ହେବ ବୋଲି ସେ ମୋତେ ପଦେ ସୁଦ୍ଧା କିଛି ପାଟି ଫିଟେଇ କହିଲେ ନାହିଁ । ମୋର ଭ୍ରମ ବାଧା ନ ପାଇ ଦ୍ୱିଗୁଣିତ ବେଗରେ ବଢ଼ିବାକୁ ଲାଗିଲା । ବାସୁଦେବଙ୍କ ସ୍ତ୍ରୀ ହେଲେ ମୋ ସ୍ତ୍ରୀଙ୍କର ସଙ୍ଗାତ । ସଙ୍ଗାତ ମୈତ୍ର ବେଭାର ଗୃହିଲା । ବାସୁଦେବଙ୍କଠାରୁ ଟଙ୍କା କରଜ ଆଣି ତାଙ୍କର ଟଙ୍କାରେ ତାଙ୍କ ପାଖକୁ ବେଭାର ପଠାଉଥାଏ । ଟଙ୍କା ପ୍ରାୟ ହଜାରେ ହେବ ହୋଇ-ଗଲା ମୋର କରଜ । ଦିନେ ହଠାତ୍ ଘରେ ପଶିଗଲା ବେଳକୁ ଦେଖିଲି, ମୋର ସ୍ତ୍ରୀ ମୋର କ୍ଷୁଦ୍ର ଶିଶୁଟିକୁ ଧରି ଭାରି ଅସମ୍ଭାଳ କାନ୍ଦୁ-ଛନ୍ତି । ମୁଁ ଏହାର କାରଣ କିଛି ବୁଝି ନ ପାରି ବହୁତ ପ୍ରକାର ତାଙ୍କୁ ବୁଝେଇଲି । ଶେଷରେ ନାନା ଅନୁନୟ କରି କାରଣ ପଚାରିଲି । ଭାଗ୍ୟକୁ ସେତେବେଳେ ମଥାରେ ନିଶା ଚଢ଼ି ନ ଥାଏ । ସେ କହିଲେ, "ମୋର କିଛି ଦୁଃଖ ନାହିଁ । ତୁମେ ସୁଖରେ ଥିଲେ ମୋର ସୁଖ । ତେବେ ତମର ତ ଠିକଏ ସୁଖ ଦେଖୁ ନାହିଁ । କାହୁଁ ଏ ନିଶା ଆସି ତମକୁ ଶେଷ କରିବାକୁ ବସିଲାଣି । ଏଣେ ମହାଜନର କେତେ ଟଙ୍କା ହୋଇଗଲାଣି, ଶୁଝିବା କିପରି ?"

ନିଶା ବିଷୟରେ ମୋ ସ୍ତ୍ରୀଙ୍କର ଯେଉଁ ମତ, ଏବେ କେତେ ଦିନ ହେଲା ମୁଁ ବି ସେହିପରି ଚିନ୍ତୁରୁଥିଲି । ମତେ ବାସ୍ତବିକ ଜଣା ପଡ଼ିଆସୁଥିଲା ଯେ, ନିଶା ଯୋଗୁ ମୋର ଶୀଘ୍ର ଯମଦ୍ୱାରକୁ ଯିବାର ପଥ ଯେପରି ପରିଷ୍କୃତ ହୋଇ ଆସୁଛି । ମାତ୍ର ମହାଜନଙ୍କ ଟଙ୍କାକଥା ଶୁଣି ମୁଁ ହସି ପକାଇ କହିଲି, 'ମହାଜନ ଟଙ୍କା ପାଇଁ ଏତେ ବ୍ୟସ୍ତ କାହିଁକି ମ ? ସେ ଆମର ବନ୍ଧୁ । ଅନ୍ୟମାନଙ୍କ ପ୍ରତି ଯାହା କରନ୍ତୁ ମୋଠାରେ ସେ କେବେ ଖରାପ ବ୍ୟବହାର ଦେଖାଇବେ ନାହିଁ । ତାପରେ କେତେ ବା ଟଙ୍କା ! ଜମି ବାଡ଼ିକୁ ତ କିଅଣ ।

ଯାହା ହେଉ ମୋ କଥାରେ ତାଙ୍କର ମନ ମାନିଲା ପରି ଜଣାଗଲା ନାହିଁ ।

ମା' ମୁହଁରେ ଟିକିଏ ଦୁଃଖ ଦେଖିଲେ ମୋର ସୁଦ୍ଧା ଯାଉ ନ ଥିଲା । ସ୍ତ୍ରୀ ମନରେ ସୁଖ ଆଣିବ ବୋଲି ନିଶା ଛାଡ଼ିଦେଲି ଏବଂ ତାଙ୍କର ମୁହଁରେ ହସ ଦେଖିବ ବୋଲି ଟଙ୍କାଟା ଶୁଝିଦେବା ନିମନ୍ତେ ମହାଜନଙ୍କ ଦ୍ୱାରସ୍ଥ ହେଲି ।

କେତେ ଥର ଯାଇଁଲି, ମାତ୍ର ଟଙ୍କା ଶୁଝା ହୋଇ ପାରିଲା ନାହିଁ । ମୋତେ ଦେଖିଲା ମାତ୍ରେ ମହାଜନେ ନାନା ଆଉ ନାନା ପ୍ରକାର କଥା ଆଣି ପକାନ୍ତି । କପରି ଟଙ୍କା କଥାଟା ନ ପଡ଼ିବ ସେଥି-ପାଇଁ ନାନା ପ୍ରକାର ହସ ଖୁସିର ବନ୍ଦୋବସ୍ତ କରନ୍ତି । ନିତାନ୍ତ ଟଙ୍କା ଶୁଝିବା କଥା ପକେଇଲେ କହନ୍ତି, "ଏ କଣ ମଧୁ! ତୁମେ 'ବାପୁ' ହୋଇ ଜମି ବିକିବ—ଟଙ୍କା ଶୁଝିବ ? ଏ ହବା କଥା ?"

ମୁଁ—ଜମି ନ ବିକିଲେ ହବ କପରି ? ଯେତେବେ ହେଲେ ତ ସେହି ଜମି ବିକି ଟଙ୍କା ଶୁଝିବାକୁ ପଡ଼ିବ । ମୋର କଣ ଆଉ କୌଣସି ଆୟ ପନ୍ଥା ଅଛି ଯେ 'ବାପୁ' ହେବାକୁ ଡରିବି ?

ମହାଜନେ—ଓଃ, ତମର ଏଇ କେତେଟା ଟଙ୍କା ପାଇଁ ତ ? ଦଲିଲ ପତ୍ର ଯାହା କରି ଦେଇଛ ସବୁ ନିଅ—ଫେରାଇ ଦେଉଛି । ମୁଁ କଣ ତମର ପର ଯେ, ଟଙ୍କା ଶୁଝିବାକୁ ଏତେ କାଉଳି ?

ଏ ସବୁ କଥା ଶୁଣି ମୁଁ ନିଶ୍ଚିନ୍ତ ହେଲି । ଘରକୁ ଫେରି ସ୍ତ୍ରୀଙ୍କୁ ସବୁ କଥା କହିଲି । ସେ ଆଗ ଟିକିଏ ଦୋଦୋପାଞ୍ଚ ହେଲେ । ପରେ ବୁଝିଲେ ମହାଜନଙ୍କ ଟଙ୍କାକୁ ଭୟ କରିବାର କୌଣସି କାରଣ ନାହିଁ । ମହାଜନଙ୍କ ବନ୍ଧୁତା ଉପରେ ମୋର ଦାବୀ ଆଉ

ବଢ଼ାଇବ ନାହିଁ ବୋଲି ସ୍ଥିର କରି ମୁଁ ମୋର ଖର୍ଚ୍ଚ-ସୂଅରେ ବିବେଚନାର ଗୋଟିଏ ବନ୍ଧ ପକେଇଦେଲି । ନିଶା ଛାଡ଼ିଦେଲି । ନିଶାଖିଆ ପୂର୍ବ ଶାନ୍ତିଦିନ ପୁଣି ଫେରି ଆସିଲା ।

ହଠାତ୍ ଦିନେ ଆସି ସମନ୍ ପହଞ୍ଚିଗଲା । ମହାଜନେ ମୋ ନାମରେ ମକଦ୍ଦମା ଦାଏର୍ କରିଛନ୍ତି । ଲେଖା ଅଲେଖା କେତେ କାଗଜ ଆସି ମକଦ୍ଦମାରେ ଏକ୍‌ଜିବିଟ୍ ହୋଇ ବାହାରି ପଡ଼ିବାର ଦେଖି ମୁଁ ତାଟକା ହୋଇଗଲି । ଜାଣିଶୁଣି କେତେ କାଗଜ ଦେଇଛି, ନିଶା ଜୋର୍‌ରେ କେତେ ଅଜାଣତରେ ଦସ୍ତଖତ ଦେଇଛି । ସବୁ ଉପରେ ମହାଜନେ ଟଙ୍କା କୋଡ଼ିଏ ହଜାର ଡେରିଦେଲେ । ବିଶେଷ କିଛି ଦ୍ରମାଣେଳେଡ଼ା ହେଲନାହିଁ । ହାକିମେ ତାଙ୍କୁ ଡିକ୍ରୀ ଦେଲେ । ମୋର ସବୁ ସମ୍ପତ୍ତି ନିଲାମରେ ଉଠିଗଲା । ମୁଁ ହଠାତ୍ ମୋର ସମସ୍ତ ସମୃଦ୍ଧି ଭିତରେ ଭିକାରି ହୋଇଗଲି ।

ସମ୍ପତ୍ତି ଯିବାରେ ମୁଁ ବିଶେଷ ଦୁଃଖିତ ହୋଇଥିଲି ପରି ମନେ ହେଉ ନାହିଁ । ଟେକେଙ୍କ ଖାଇଲି—ଲୋକଙ୍କୁ ଚିହ୍ନିଲି । ମୋର ଅଫିମା ବନ୍ଧୁଙ୍କ ସତ୍ୟବାଦିତା ଏବଂ ମହାଜନଙ୍କ ସାଧୁତାରେ ମର୍ମାହତ ନ ହୋଇ ମୁଁ ବରଂ ସେମାନଙ୍କୁ ଏତେଦିନେ ଭଲ ଚିହ୍ନିଲି ବୋଲି ଖୁସି ହେଲି ।

ଏ ସବୁ ମୋ' ପତ୍ନୀ ଯୋଗୁଁ । ଟଙ୍କା ପଇସାକୁ ସେ ବଡ଼ ବୋଲି କେବେ ମନେକରୁ ନ ଥିଲେ । ତାଙ୍କ ସ୍ୱାମୀ ଭଲ ବାଟକୁ ଫେରି ଆସିଲେ, ମନ୍ଦ ସଙ୍ଗ ଗଲା, ମନ୍ଦ ଲୋକଙ୍କୁ ମନ୍ଦ ବୋଲି ଚିହ୍ନିଲେ—ଏଥିରେ ତାଙ୍କର ଆନନ୍ଦ !

ମାତ୍ର ଏ ଆନନ୍ଦ ବେଶୀଦିନ ରହି ପାରିଲା ନାହିଁ । ବେଶୀ ଟଙ୍କା ଥିଲେ ବିଶେଷ ଲାଭ ନ ହୋଇ ପାରେ—ହୁଏତ କ୍ଷତି ହୋଇ

ପାରେ । କିନ୍ତୁ ଏକାବେଳେକେ ଠଙ୍କା ନ ଥିଲେ ଯେ ଗାଁରେ ଘର କରି ରହି ହେବ ନାହିଁ । ପିଲାଙ୍କୁ ଦାଣ୍ଡକୁ ଛାଡ଼ିବା ପାଇଁ ଜୁ' ପାଇବ ନାହିଁ । ଏ କଥା କ୍ରମେ କ୍ରମେ ତାଙ୍କ ମନରେ ଆସି ଲାଗିଲା । ସ୍ନେହର ପୁଅଟି ଖାଇବା ପିଇବାକୁ, ଲଗେଇବାକୁ ନ ପାଇ କ୍ରମେ କ୍ରମେ ଶୀର୍ଣ୍ଣ ହୋଇ ଆସିଲା । ଶେଷରେ ତା'ର ବେମାରି ହେଲା । ଏ ବେମାରିର ଉପଯୁକ୍ତ ପ୍ରତିକାର କରିପାରିଥିଲେ ମୋ ମନରେ ଏତେ ଦୁଃଖ ରହି ଯାଇ ନ ଥାନ୍ତା । ମୋର ସ୍ୱଭାବିକ ଉଦାସୀନତା ସବଳରେ ଦୂରୀଭୂତ ହୋଇ ପ୍ରତିହିଂସାରେ ମୋର ହୃଦୟ ବିଷାକ୍ତ ହୋଇ ନ ଥାନ୍ତା । ପଇସାଟିଏ ଦେଇ ଔଷଧ ପାନେ କିଣିବାକୁ ବଳ ପାଇଲି ନାହିଁ । ପିଲାଦିନୁ ଦରିଦ୍ର ଘରେ ଚଳି ଆସିଥିଲେ, ମାଗିବା ଅଭ୍ୟାସ ହୋଇ ଯାଇଥାନ୍ତା ; ମାଗି ହତାଶ ହେଲେ ବିଶେଷ ବାଧା ହେଉ ନ ଥାନ୍ତା । କିନ୍ତୁ ମୁଁ ଯେ ଦେଇ ଶିଖିଥିଲି—ମାଗିବି କିପରି ? ପିଲାଟି ଶେଷରେ ଆମକୁ ଛାଡ଼ି ଚାଲିଗଲା ।

ବୁଡ଼ି ଯାଉଥିବା ମଣିଷ କୁଟା ଖଣ୍ଡେ ଧରି ରକ୍ଷା ପାଇଯିବାର ଚେଷ୍ଟା କରେ । ମୁଁ ମୋ ସ୍ତ୍ରୀଙ୍କର ସ୍ନେହରେ ସବୁ ପାସୋରିବାକୁ ବସିଲି । ସେ ଏଣିକି ମୋର ପ୍ରତ୍ୟେକ ଅଭାବ ପ୍ରତ୍ୟେକ ଅସୁବିଧା ଯତ୍ନ ସହକାରେ ଦୂର କରିବାକୁ କେତେ ଲାଗିଲେ ।

ମୋ ଆଗରେ ସେ କଠୋର ଆତ୍ମସଂଯମ ଅବଲମ୍ବନ କରି ଥାନ୍ତି, ମୁହଁରେ ଦୁଃଖର କ୍ଷୀଣ ଛାୟା ମଧ୍ୟ ମୁଁ ଦେଖି ପାରେ ନାହିଁ । ଏ ଦୁଃଖ କଣ ଇମିତି ସେମିତି ଦୁଃଖ ଯେ ଯାର ଛାୟା ପଡ଼ନ୍ତା ? ଏ ତ ମଧ୍ୟାହ୍ନ ସୂର୍ଯ୍ୟ ପରି । ଛାଇ ନାହିଁ ମାତ୍ର ତାତିରେ ଅନ୍ତର ଦଗ୍ଧ ହୋଇ ଯାଉଛି । କ୍ରମେ ମୋ ସ୍ତ୍ରୀଙ୍କର ସ୍ୱାସ୍ଥ୍ୟଭଙ୍ଗ ହେଲା ।

ଯମ ରଜା ହାତରୁ ମୋ ଦୁଃଖକୁ ବହ୍ରୁ ପ କରି ତାଙ୍କୁ କୋଳରେ ନେଇ ଗ୍ଳଲଗଲେ ।

ତାଙ୍କର ଚିତା ଜଳିବା ସାଙ୍ଗେ ସାଙ୍ଗେ ମୋ ହୃଦୟରେ ପ୍ରତିହିଂସାର ନିଆଁ ଜଳି ଉଠିଲା । ସେ ନିଆଁକୁ ଶାନ୍ତ କରିବାକୁ ବା ଲିଭାଇବାକୁ କେହି ନ ଥିଲେ । କୌଣସି ବାଧା ନ ପାଇ ତାର ତାତିରେ ମୁଁ ସିଝିଗଲି—ମୋର ସମସ୍ତ ସଦ୍‌ ବୃତ୍ତି ନଷ୍ଟ ହେଲା । ପ୍ରତିହିଂସା ନେବାପାଇଁ ମୁଁ ହୋଇଗଲି ପାଗଳ । ବାସ୍ତୁ ମହାଜନ ଯୋଗୁଁ ମୋ ଘର ଯାଇଛି, ତ ର ମା ଯାଇଛି, ସେହି ମୋର ସର୍ବ ନାଶର ମୂଳକାରଣ ।

ଦିନେ ପାଗଳ ଭଳିଆ ପ୍ରଳାପ କରି କରି ମୁଁ ଯାଇ ତାଙ୍କ ଦୁଆରେ ପହଞ୍ଚିଲି । ପ୍ରଳାପ କରି କରି ମୋର ସମସ୍ତ କଥା ତାଙ୍କୁ କହିଲି । ସେଦିନ ତାଙ୍କଠାରୁ ଟିକିଏ ଦୟା ପାଇଥିଲେ କଣ ହୋଇ-ଥାନ୍ତା କେଜାଣି ? ତେବେ ମୁଁ ଏତିକି କହିପାରେ ମୋର ହୃଦୟ ଅଧିକ ବିଷାକ୍ତ ହୋଇନଥାନ୍ତା । ତାଙ୍କଠାରୁ ମିଳିଲା କଣ ? ନିର୍ମମ କଠୋରତା । ମତେ ଅତି କଦର୍ଯ୍ୟ ଅସଭ୍ୟ ଭାଷାରେ ଗାଳି ଦେଇ ମୋର ଶାରୀରିକ ମଙ୍ଗଳ ଉଦ୍ଦେଶ୍ୟରେ ଅତିଶୀଘ୍ର ବାହାରିଯିବାକୁ ଉପଦେଶ ଦେଉ ଦେଉ ସେ କହିଲେ, "ଯା, ତୁ ମୋର କଣ କରି ପକେଇବୁ, କର । ଏଇଟା ବୁଦ୍ଧି ଦେଖ ହେ, ସବୁ ଦୋଷ ମୋର ମୁଣ୍ଡରେ ଲଦି ଦେଉଛି । ତୋର ତ ମାଇପ ମଲା, ପୁଅ ମଲା ମୋର ଦୋଷ କଣ ? ମୁଁ କଣ ଯମ ରଜା ନା ପରମେଶ୍ୱର ?" ଖାଲି ଗାଳିରେ ମହାଜନଙ୍କ ମନ ସନ୍ତୁଷ୍ଟ ହେଲା ନାହିଁ । ପଠାଣ ପିଆଦା ହାତରେ ମୋତେ ମାଡ଼ ଖୁଆଇ ଖୁଆଇ ସେ ଗାଁଠାରୁ କୋଶେକେ ଆଣି ଛାଡ଼ି ଦେଇଗଲେ । ସେହି ଦିନଠାରୁ ମୁଁ ଆଉ ଗାଁକୁ ଫେରି

ନାହିଁ । ସ୍ଥିର କରିଥିଲି, ମୋ ସ୍ୱାମୀ ଓ ତା ମା'ର ଋଣ ପରିଶୋଧ କରି ଗାଁକୁ ଫେରିବି । ଏହି ଜଙ୍ଗଲ ଭିତରେ ଅନେକ ଦିନ କଟାଇଛି ସୁଯୋଗ ଅପେକ୍ଷାରେ । ଆଜି ବେଶ୍ ସୁଯୋଗ ମିଳିଥିଲା, କିଣ ହେବ—

ନା, ଯାହା ହୋଇଛି, ଠିକ ହୋଇଛି । ମୋ ପୁଅ ଓ ତା ମା'ର ଋଣ ପରିଶୋଧ ହୋଇଛି । ସେମାନେ ଏଥର ଶାନ୍ତିରେ ରହିବେ । ମହାଜନଙ୍କୁ ଈଶ୍ୱର ଭଲ ବୁଦ୍ଧି ଦିଅନ୍ତୁ । ଈଶ୍ୱର ତାଙ୍କ କଥା ବୁଝନ୍ତୁ । ଈଶ୍ୱରଙ୍କ କାର୍ଯ୍ୟରେ ଆମର ହସ୍ତକ୍ଷେପ କରିବାର କି ଅଧିକାର ?"

ଗୋପାଳ—ନା, ଆମର ଅଧିକାର ଅଛି ଯେ, ତୁମେ ଯେଉଁ ଉପାୟ ଅବଲମ୍ବନ କରିଥିଲ, ସେ ଉପାୟରେ ନୁହେଁ । ଅତ୍ୟାଚାରୀର ଅତ୍ୟାଚାରକୁ ହସି ହସି ସହିଗଲେ, ତାର ଦୁଷ୍ଟ ମନରେ ଯେଉଁ ଆଘାତ ହୁଏ ତୁମର ବଧରେ ସେପରି ଆଘାତ ହୁଅନ୍ତା ନାହିଁ । ଦେଖିଲ ନାହିଁ, ଆଜି ମହାଜନର କିପରି ମହାପରିବର୍ତ୍ତନ ହେଲା !

ମଧୁ ରାତିଟି ବେଶ ଶାନ୍ତିରେ ଶୋଇଲା । ମାତ୍ର ଗୋପାଳଙ୍କର ନିଦ ହେଲା ନାହିଁ । ସେ ମନେ ମନେ ମଧୁକୁ ଧନ୍ୟବାଦ ଦେଉଥାନ୍ତି । ଲୋକେ କେତେ ସହି ଏ ସଂସାରରେ ଚଳୁଛନ୍ତି । ଆଉ ସେ ? ପଦେ କଥା ସହିପାରିଲେ ନାହିଁ । ମଧୁକୁ ଦେଇଥିବା ଉପଦେଶ ମନେ ପଡ଼ିଲା—ଆମ ପ୍ରତି ହୋଇଥିବା ଅନ୍ୟାୟର ପ୍ରତିକାର ଅଛି ସହିବାରେ । ନିଜ ସମ୍ପର୍କରେ ସେ କିଣ ତାଙ୍କ ପ୍ରତି ହୋଇଥିବା ଅନ୍ୟାୟ ସହିଛନ୍ତି, ନା ଅନ୍ୟାୟରେ ଉତ୍ପୀଡ଼ିତ ହୋଇ ସ୍ଥାନ ତ୍ୟାଗ କରିବାଦ୍ୱାରା ଦେଖାଇଦେଇଛନ୍ତି ସେ ଭୀରୁ !

ସକାଳୁ ମଧୁ ଉଠି ବାହାରିଲା ଯିବାକୁ । ଗୋପାଳ ଖଣ୍ଡେ ବାଟ ତା' ସାଙ୍ଗେ ଆସି, ବିଦାୟ ଦେଲାବେଳେ ପଚାରିଲେ, "ଆଜି ପୁଣି କେଉଁଠାରେ ରହଣି ହେବ ?"

ମଧୁ—ଆଉ କେଉଁଠାରେ ? ସିଧା ଗାଁକୁ ଯାଉଛି ଯିବ, ଗାଁରେ ରହିବ । ଆଗ ବିଚାରୁଥିଲି ବାଆଜି ହୋଇ ନିଜ ନଗରେ କେଉଁଠାରେ ରହିବ । ମାତ୍ର ଗାଁରେ ରହିବା ଯେ କର୍ତ୍ତବ୍ୟ । ଆପଣଙ୍କଠାରୁ ଯେଉଁ ଶିକ୍ଷା ପାଇଲି ସେ ଶିକ୍ଷା ଲୋକଙ୍କୁ ବୁଝାଇବ କିଏ ? ଲୋକଙ୍କ ସାଙ୍ଗେ ରହି ନିଜ କଥାରେ, କାର୍ଯ୍ୟରେ ଏ ଶିକ୍ଷା ଉଦାହରଣ ନ ଦେଖାଇଲେ, ଶିଖିବାର ଲାଭ କଣ ?

ମଧୁ ଚାଲିଗଲା, ଗୋପାଳ ଏହି ଶେଷ କଥାଟିକ ମନରେ ବାଣ୍ଟି ବାଣ୍ଟି ଫେରିଲେ । ମଧୁ କଣ କହିଲା ? ଲୋକଙ୍କ ମଧ୍ୟରେ ନ ରହିଲେ, ଲୋକଙ୍କ ମଧ୍ୟରେ ରହି ନିଜ ଶିକ୍ଷାବଳରେ ସେମାନଙ୍କର କୌଣସି ପରିବର୍ତ୍ତନ କରି ନ ପାରିଲେ, ନିଜେ ବେଶି ଶିଖିବାର, ବେଶୀ ଜାଣିବାର ଲାଭ ରହିଲା କେଉଁଠାରେ ? ଯୁ । ଯଦି ସତ୍ୟ, ତେବେ ତାଙ୍କ ନିଜ ଶିକ୍ଷାର ଫଳ କଣ ? ଗୋପାଳ ବହୁ ଚିନ୍ତାରେ କିଛି ସ୍ଥିର କରି ପାରିଲେ ନାହିଁ ; ତେବେ ସେ ଜଙ୍ଗଲରେ ଆସି ରହିବାଦ୍ୱାରା ନିଜର ସ୍ୱାର୍ଥପରତା ବ୍ୟକ୍ତୀତ ଅନ୍ୟ କିଛିର ପରିଚୟ ଦେଉଛନ୍ତି ବୋଲି ତାଙ୍କର ମନେ ହେଲା ନାହିଁ ।

## ତେର

ଖରେନ୍ଦ୍ର ଆଉ କୁମୁଦିନୀ ତାଙ୍କ ବାସଗୃହର ଉପର ମହଲାରେ ଟେବୁଲ ଖାନାରେ ବସିଛନ୍ତି । ଖାନା ଆସି ଶେଷ ହୋଇଗଲାଣି । ଦୁଇ ଜଣଙ୍କ ଆଗରେ ଥୁଆ ହୋଇଥିବା ଥାଳି ଦୁଇଟିରେ ଖଣ୍ଡିଏ ଲେଖାଏଁ ମୁରିରୁ ଟିକିଏ ଟିକିଏ, ଆଉ ଖିରମୋହନର ଶେଷ ଭାଗରୁ

ଘଟେ ଲେଖାଏଁ ବଳୁଛୁ । ବୋଧହୁଏ ଠିକ ଏହି ଅବସ୍ଥାରେ ପେଟ ପୂରିଯାଇଛୁ । ଆଜି ସେ ଅବଶିଷ୍ଟ ପୁରି ଟିକକ ଓ ଖିରମୋହନ ଟିକକ ଭିତରକୁ ଠେଲି ଦେବା ପାଇଁ କଳ୍ପ ନାହିଁ । ରୁମାଲରେ ହାତ ପୋଛି ହୋଇଗଲା । ବଳାଖ ସିଗାରେଟ ଖଣ୍ଡିଏ ବାହାର କରି ସେଥିରେ ନିଆଁ ଲଗେଇ ଧୂଆଁ ଖାଇ ଖାଇ ଏବଂ ସିଗାରେଟ୍ ଧୂଆଁରେ ନିଜର ଖାଇଥିବା ଖାଦ୍ୟକୁ ଜୀର୍ଣ୍ଣ ବା ଅଜୀର୍ଣ୍ଣ କରୁ କରୁ ବୀରେନ୍ଦ୍ର କୁମୁଦିନୀ ଆଡ଼କୁ ଚାହିଁ ଟିକିଏ ହସି ହସି କହିଲେ, "କୁମ, କହୁଥିଲୁ ପରା ସେ ମରିବ ନାହିଁ ବୋଲି ? ଏବେ କଣ ହେଲା ?"

କୁମୁଦିନୀ 'ସେ' କିଏ ବୁଝିପାଇ ବ୍ୟଗ୍ର ଭାବରେ କହିଲା, "କାହିଁକି । କଣ ହେଲା କି ? ସେ କଣ ମରିଲା ?"

ବୀରେନ୍ଦ୍ର ମୁରୁକି ମୁରୁକି ହସି କହିଲେ, "ନାହିଁ, ମରନ୍ତା କାହିଁକି ? ତୋ ମନେ ମନେ ମୁଁ କହୁଛୁ କାମର ନୁହେଁ, ମଣିଷ ନୁହେଁ, ଗୋରୁ, ନା ?"

କୁମୁଦିନୀ—ଏତେ କଥାରେ କଣ ଅଛି ମ ? ସଫା କଥା କହୁ ନାହଁ ?

ବୀରେନ୍ଦ୍ର—ଏତେ ବେଳ ଯାଏ ବୁଝି ପାରୁ ନାହୁଁ ? ବୁଢ଼ା ତ ମୋତେ ଜ୍ୱାଇଁ କରିବ ବୋଲି ଏକବାରେ ବାଇ । ଝିଅ ମରୁ ମରୁ ଟିକିଏ ଡେରି ହେଲା । ମତେ ବୋଧହୁଏ, ମନେ ମନେ ସେ ଆଉ ଗୋଟାଏ କାହାକୁ ବରଣ କରିଥିଲା । ଜାଲରେ ପଡ଼ିବାକୁ ଟିକିଏ ଡେରି କଲା । ତେବେ ଜାଲିଆ ଟାଣ ହେଲେ ବର୍ତ୍ତୁଛି କେତେକେ ?

ଭାଇ ସବୁଗୁଡ଼ାକ ପ୍ରଶଂସା ଆତ୍ମସାତ୍ କରିବାର ଚେଷ୍ଟା କରି-ବାରେ କୁମୁଦିନୀର ଟିକିଏ ଈର୍ଷା ହେଲା ପରା ! ସେ କହିଲା, "ତମେ

ଇମିତ ପାଞ୍ଚବର୍ଷ ଗୋଡ଼େଇଥିଲେ କଣ ଫଳ ହୋଇଥାନ୍ତା ? ମୁଁ ପଛରେ ଥାଇ ସବୁ ଯୋଗାଡ଼ କରି ଦେଇଥିଲି ବୋଲି ସିନା ଆଜି ଇମିତ ହଉଛି ? ତୁମେ ଇଠେଇ ସିଠେଇ ବୁଲି ତାସ ପଶାରେ ସମୟ କଟାଉଥାଅ, ଏଣେ ମୁଁ କନକକୁ କହେ, 'ତୋର କଥା ଭଲି ଭଲି ବାରଭାଇ ସବୁବେଳେ ଚଉକିଟିରେ ବସିଥାନ୍ତି । ତୋର ଫଟୋ ଖଣ୍ଡିକୁ ସବୁବେଳେ ଗୁହିଁଥାନ୍ତି । ଦିନେ ନଈକୂଳରେ ବୁଲି-ବାକୁ ଯାଇଥିଲୁ, ମୁଁ ବାଟପାକ ତମକୁ ଗ୍ରହଣ କରିବାକୁ ତାକୁ ଖୋସାମତ କରୁଥାଏ । ବୁଲାକରି ଫେରିଲାବେଳେ ସତେ କାନ୍ଦଲାପରି ମୁହଁଟା କରି ଛଳଛଳ ଆଖିରେ କୁଣ୍ଢେଇ ପକେଇ ତାକୁ କହିଲି, 'କନ, ମୋର ଗୋଟିଏ ବୋଲି ଭାଇ । ତୁ ଯଦି ତାକୁ ନିରାଶ କରି ଦେବୁ ତାହାହେଲେ ତା'ର ପ୍ରାଣ ଯିବ, ମୁଁ ଅରକ୍ଷିତା ହେବି ।' ଏମିତି ଚେଷ୍ଟା ନ କରି ଥିଲେ ତୁମେ କାଏ ଯେ କାଏ ?"

ବୀରେନ୍ଦ୍ର—ତାହାହେଲେ ତୋ'ର ବାନ୍ଧବୀ ପ୍ରତି ଖୁବ୍ ଭଲ ବ୍ୟବହାର କରିଛୁ !

କୁମୁଦିନୀ ଉତ୍ତେଜିତ ହୋଇ ଭାଇଙ୍କର ଆରୋପିତ ଦୋଷ ଖଣ୍ଡନ କରିବାକୁ ଯାଇ କହିଲା, "କାହିଁ, କଣ ମନ୍ଦ ବ୍ୟବହାରଟେ କଲି କି ? ଆମ ଘରକୁ ବୋହୂ ହୋଇ ଆସିବ । ଏହାଠାରୁ ଆଉ କଣ ବେଶି ଗୋଟାଏ ସୌଭାଗ୍ୟ ତା' କପାଳରେ ଘଟି-ଥାଆନ୍ତା କି ?"

ବାସ୍ତବିକ ଆଉ କଣ ସୌଭାଗ୍ୟ କନକ କପାଳରେ ଘଟିଥାନ୍ତା ? ଘର ଅଛି, ସମ୍ପତ୍ତି ଅଛି—ଘରେ, ସମ୍ପତ୍ତିରେ ମାଲିକ ହେବ, ଆଉ ଚିନ୍ତା କଣ ?

ବୀରେନ୍ଦ୍ର ବୋଧହୁଏ ଭଉଣୀର ମନ୍ତବ୍ୟରେ ସମ୍ମତ ହେଲେ, ସେ କିଛି ନ କହି କନକର ସୌଭାଗ୍ୟ ଓରଫ ନିଜ ସୌଭାଗ୍ୟ ବିଷୟ ଚିନ୍ତା କରୁ କରୁ ପାଟିରୁ ବାହାରିଯାଉଥିବା ସିଗାରେଟ୍ ଧୂଆଁକୁ ନିର୍ନିମେଷ ନୟନରେ ଖାଲି ଚାହିଁ ରହିଥିଲେ ।

କୁମୁଦିନୀ ଆଉ କଣ ଗୋଟାଏ କହିବ ବୋଲି ଚିନ୍ତା କରୁଛି, ଏପରି ସମୟରେ ବାହାରୁ 'ବାବୁ, ବାବୁ' ବୋଲି ଡାକ ଶୁଭିଲା । ବୀରେନ୍ଦ୍ର ସ୍ୱରଟା ବାରି ଉତ୍କଣ୍ଠିତ ହୋଇ ଦୁଆର ଫିଟାଇବାକୁ ଧାଇଁଲେ । କୁମୁଦିନୀ, "ନାଇଁ ମ ଭାଇ, ଜାଲରୁ କୁଆଡ଼େ ଖସି ନାହିଁ ମ, ଏତେ ଉତ୍କଣ୍ଠା କାହିଁକି ?" ବୋଲି କହି ହସି ହସି ସ୍ୱ କାର୍ଯ୍ୟରେ ଅନ୍ୟତ୍ର ଗଲା ।

ବୀରେନ୍ଦ୍ର ଦୁଆର ଖୋଲୁ ଖୋଲୁ ପଚାରିଲେ, "କିରେ ବିନୁଆ, କଣ ?"

ବିନୁଆ ବୀରେନ୍ଦ୍ରଙ୍କୁ ନମସ୍କାର କରି କହିଲା, "ବାବୁ ! ବାବୁ ଡାକୁଛନ୍ତି, ଟିକିଏ ଆସ ।"

"ହଉ, ତୁ ଯା, ମୁଁ ଆସୁଚି" ବୋଲି କହି ବୀରେନ୍ଦ୍ର ଯିବାକୁ ପ୍ରସ୍ତୁତ ହେବା ନିମନ୍ତେ ଭିତରକୁ ଗଲେ ।

ଦୁଇ ତିନି ମିନିଟ୍ ପରେ ବୀରେନ୍ଦ୍ର ବାଳଟା ଟିକିଏ ଘଷି ଦେଇ, ଭଲ ସରୁ ଲୁଗା ଖଣ୍ଡିଏ ପିନ୍ଧି, ମଠା କାମିଜ ଖଣ୍ଡିଏ ଗଳେଇ ପଟେଇ ଚଟିଯୋଡ଼ା ପାଦରେ ଦେଇ ଭଗ୍ନୀ ଶ୍ୱଶୁରାଳୟକୁ ବାହାରିଲେ ।

ମଦନବାବୁ ତାଙ୍କ ଆରାମ ଚଉକିରେ ବସି ହୁକା ଘୁଡୁ ଘୁଡୁ କରୁଥାନ୍ତି । କନକ ପାଖରେ ଗୋଟିଏ ଚଉକିରେ ବସି ଖଣ୍ଡିଏ

ଖବରକାଗଜକୁ ଗୁଣ୍ଡିଥାନ୍ତି । ବୀରେନ୍ଦ୍ର ଯାଇ ଖାଲି ଥିବା ଖଣ୍ଡେ ଚଉକିରେ ବସିଲେ ।

ବୀରେନ୍ଦ୍ରଙ୍କୁ ଦେଖି ମଦନବାବୁ କହିଲେ, "ବାବା, ତମରି ଅପେକ୍ଷାରେ ଥିଲି । କାଲିଠାରୁ ଦଶହରା ଛୁଟି ଆରମ୍ଭ ହେଉଛି । ମୁଁ ବିଚାରୁଛି ଏ ଛୁଟିରେ ଓଡ଼ିଶାର ଭିନ୍ନ ଭିନ୍ନ ଅଞ୍ଚଳରେ ଥରେ ବୁଲିବା ପାଇଁ । ତୁମେ ଓ କନକ ସାଙ୍ଗରେ ଯିବ । କଣ—ଯିବ ?

ବୀରେନ୍ଦ୍ର ଟିକିଏ ଲଜ୍ଜିତ ହୋଇ ଉତ୍ତର ଦେଲେ, "ହଁ, ମୋ'ର ତ କଲେଜ ଛୁଟି, ଗଲେ ହୁଅନ୍ତା ।"

ମଦନବାବୁ—ମୁଁ ଖଣ୍ଡେ ମଟର ଓ ଆଉ ଖଣ୍ଡେ ମଟର ଲରିର ବନ୍ଦୋବସ୍ତ କରୁଚି । ମଟରରେ ଆମେମାନେ ଯିବା । ଲରିରେ ଗୋଟିଏ ଷ୍ଟୋଭ ଓ ଅନ୍ୟାନ୍ୟ ଜିନିଷପତ୍ର ରହିବ । କାହାରି ଦ୍ୱାରସ୍ଥ ହେବାକୁ ପଡ଼ିବ ନାହିଁ—ସବୁ ପାଖରେ ଥିବ । ବାଟରେ କୌଣସିଠାରେ ରହିଲେ ମଧ୍ୟ କିଛି ଭୟ ନ ଥିବ । ଆମେ ସର୍ବମୋଟ ଛ'ଜଣ ହେବା ।

ବୀରେନ୍ଦ୍ର ପ୍ରସ୍ତାବରେ ପୁଲକିତ ହୋଇ କହିଲେ, "କେଉଁ କେଉଁ ସ୍ଥାନ ଦେଇ ଯିବାକୁ ହେବନି ?"

ମଦନବାବୁ—ସମୁଦାୟ ସ୍ଥିର କରି ନାହିଁ ; ତେବେ ଗଡ଼ଜାତ-ମାନଙ୍କ ମଧ୍ୟ ଦେଇ ଗଞ୍ଜାମ ଯିବା ଏବଂ ସେଠାରୁ ଗଞ୍ଜାମ ବଡ଼ ସଡ଼କରେ ଫେରି ଆସିବା । ମାନଚିତ୍ରଟା ଆଣିଲ, ସଡ଼କଗୁଡ଼ାକ ଦେଖି ବାଟ ସ୍ଥିର କରିଦେବା । ଗଲେ ତ ଦୁଇ ସପ୍ତାହ ଭିତରେ ବାହାରିବାକୁ ହେବ ।

ମାନଚିତ୍ର ଆସିଲା । ମଦନବାବୁ ବୀରେନ୍ଦ୍ରଙ୍କ ସହିତ ବିଚାର କରି ମାନଚିତ୍ରରେ ନିଜର ବାଟଟା ଗୋଟାଏ ନାଲି ପେନ୍‌ସିଲରେ ଚିହ୍ନିତ କରିଦେଲେ ।

ବାଟ ସ୍ଥିର କରିଦେବା କାମ ସରିବା ପରେ ଭଡ଼ାମଟର ଲରି ଖୋଜା ଲାଗିଲା । ମଟର ତ ମଦନବାବୁଙ୍କର ଗୋଟାଏ ଥାଏ । ବୀରେନ୍ଦ୍ର ସୂଚନା ଦେଲେ, 'ଆଚ୍ଛା, ବାଖରାବାଦ ଯଜ୍ଞେଶ୍ୱର ବାବୁଙ୍କ ଲରିଟା ନେବା ।'

ମଦନବାବୁ—ନା, ସେ କମ୍ପାନୀବାଲାଟା ଭାରି କୃପଣ । ତା ଲରି ଚକଗୁଡ଼ାକ ସବୁ ଦଦରା ହୋଇଥିବ । ବାଟରେ ଦଗା ଦେବ ଯେ ।

ବୀରେନ୍ଦ୍ର—ତେବେ ଗଙ୍ଗାମନ୍ଦିର କମ୍ପାନୀରୁ ?

ମଦନବାବୁ—ରାମ, ରାମ, ସେ ଲରିରେ ଆମ ଜନକପକ୍ଷ ଥିଲେ ଲୋକେ ଆମକୁ କହିବେ କଣ ? ସେ ମଟର ଲରିଗୁଡ଼ାକରେ କଂଗ୍ରେସ ପତାକାର ଚିହ୍ନ ହୋଇଛି । ପରିଗୃହକଟା ଗାନ୍ଧିବାଲା । ଡ୍ରାଇଭରମାନେ ନିଶ୍ଚୟ ଖଦଡ଼ ପିନ୍ଧିଥିବେ । ମୋ ପେନ୍‌ସନ ଟଙ୍କାଟା ଶୂନ୍ୟେ ଶୂନ୍ୟେ ଉଡ଼ିଯିବ ଯେ !

ବୀରେନ୍ଦ୍ର—ବାସ୍ତବିକ ସେ କଥାଟା ମୋର ମନେ ହେଲା ନାହିଁ । ତେବେ ତେଲଙ୍ଗାବଜାରରୁ ବନମାଳୀଠାରୁ ନେବା ।

ମଦନବାବୁ—ହଁ, ନେବା ଯେ, ତା ଲରିଗୁଡ଼ାକ ଦେଖିବାକୁ ଭାରି କୁତ୍ସିତ । ତେବେ ସେଥିରେ କ୍ଷତି କଣ ? ଟାୟାରଗୁଡ଼ାକ ଟିକିଏ ଦେଖିନେବ । ଇଞ୍ଜିନଟା ଭଲ ଥିଲେ ହେଲା । ଆଚ୍ଛା, କନକ ! ଘରକୁ କିଏ ଯିବ ସାଙ୍ଗରେ ?

କନକଙ୍କର ଏ ବୁଲିଯିବା ପ୍ରସ୍ତାବରେ ଆଦୌ ମନ ନ ଥିଲା । ବିବାହ ବିଷୟଟା ନେଇ ତାଙ୍କ ମନକୁ ଶାନ୍ତି ନ ଥାଏ । ବୀରେନ୍ଦ୍ରଙ୍କ କଥା ଚନ୍ଦ୍ରାକଲେବେଳକୁ ବାରି ବାରି ଗୋପାଳ ଆସି ମନେ ପଡ଼-

ଯାଉଥାନ୍ତି । ଏଣେ ପୁଣି ଶୀତେନ୍ଦ୍ରଙ୍କ ଆଗେ କହିଁ କହିବାକୁ ଲାଜ ମାଡ଼ୁଥାଏ ।

ତେବେ ବାପାଙ୍କ ପ୍ରଶ୍ନର ଉତ୍ତର ନ ଦେଲେ ଅଡ଼ୁଆ । ସେ ଅସ୍ପଷ୍ଟ ସ୍ୱରରେ କହିଲେ, "କାହିଁକି, ବନୁଆ !"

ମଦନବାବୁ ବଡ଼ ଜୋରରେ କହିଲେ, "ନା, ନା, ବନୁଆ କଥା ପଡ଼ିବ ନାହିଁ । ଜଙ୍ଗଲ ବାଟରେ ପିଲାଟାଏ କରିବ କଣ ? ମାଧିଆ ଯିବ ସାଙ୍ଗରେ । ବନୁଆ ତ ଗାଁକୁ ଯିବ ବୋଲି କହୁଥିଲା । ତାକୁ ଘରକୁ ଛାଡ଼ିଦିଅ ।"

ସ୍ଥିର ହେଲା—ଦୁଇ ଦିନ ପରେ ତୃତୀୟ ଦିନ ଯାତ୍ରା ଆରମ୍ଭ ହେବ । ନିଜ ମଟର ବାଦ୍ ତେଲଙ୍ଗାବଜାର ମଟର କମ୍ପାନୀରୁ ମଜବୁତ୍ ଟାୟାର ଏବଂ ଭଲ ଇଞ୍ଜିନ୍‌ବାଲା ଗୋଟିଏ ଭଡ଼ା ନିଆଯିବ ଏବଂ ମଟରଗୁଡ଼ିକ ଦୁଇ ଜଣକ ସଙ୍ଗେ ମାଧିଆ ଗୃହକର ରହିବ ।

## ପନ୍ଦର

କୁମାର ପୂର୍ଣ୍ଣିମା—ବାଳକ ବାଳିକାମାନଙ୍କ ମନରେ କି ନୂଆ ସ୍ଫୂର୍ତ୍ତି, କି ଅପୂର୍ବ ଆନନ୍ଦ ! ବର୍ଷକୁ ବର୍ଷ କୁମାର ପୂର୍ଣ୍ଣିମା ଆସୁଛି ଯାଉଛି ; ମାତ୍ର ତାର ଆକର୍ଷଣ କମୁ ନାହିଁ—"ହଁ, ଆରବର୍ଷ ତ ହୋଇଥିଲା" ବୋଲି କୌଣସି ବାଳକ କହୁନାହିଁ । ସେହି ମାମୁଲି ନୂଆ ଲୁଗାଖଣ୍ଡ ପିନ୍ଧି, ସେହି ମାମୁଲି ନଡ଼ିଆ ତେଲ ଡଅଁର ପିଠାରୁ ପୁଞ୍ଜାଏ ଓ ଉଖୁଡ଼ା ମୁଠାଏ ନୂଆଲୁଗାର ଅଣ୍ଟିରେ ପୂରାଇ ପିଲାଏ କୁମାର-ପୂର୍ଣ୍ଣିମା-ସୁଲଭ ଆନନ୍ଦ ଆରମ୍ଭ କରିଦେଲେଣି । ଆରବର୍ଷ

ଏହିପରି ନୂଆ ଲୁଗା ପିନ୍ଧିଥିଲେ, ଆରବର୍ଷ ଏହିପରି ଆରିଷା ପିଠା ଓ ଉଖୁଡ଼ାରେ ଅଣ୍ଟି ଭର୍ତ୍ତି ହୋଇଯାଇଥିଲା ବୋଲି କାହିଁ କାହାର ତ ମନେ ନାହିଁ !

ନଧିଆ ଅଣ୍ଟିରେ ଉଖୁଡ଼ା ମୁଠାଏ ଧରି ଅନ୍ୟ ପିଲାମାନଙ୍କ ପରି ବୁଲୁଛି । ତା'ସଙ୍ଗରେ ଗୋଟିଏ ସାଥୀ—ମଦନବାବୁ ଘରେ ଆମ୍ଭମାନଙ୍କ ପରିଚିତ ବନୁଆ । ବନୁଆ ନଧିଆର ମାଉସୀପୁଅ ଭାଇ । ତା'ର ଘର କୋଶେ ଖଣ୍ଡେ ଦୂରରେ ଗୋଟିଏ ଗାଁରେ । ବାପ ମା ଅନେକ ଦିନ ଆଗରୁ ମରିଗଲେ ପରେ ଜଗୁଆ-ମା ତା'ର ଏକମାତ୍ର ଆତ୍ମୀୟା ହୋଇଛି । ବାପ ମା ମଲା ପରେ ବନୁଆ ଆସି ମାଉସୀ ଘରେ ଆଶ୍ରୟ ପାଇଲା । ଜଗୁଆର ମୂଲରେ ଏବଂ ଜଗୁଆ ମାର କୁଟା କୁଟୁଣୀ ରୋଜଗାରରେ ଗୋଟିଏ ଅଧିକା ଅଂଶୀଦାର ହେଲା । ଏବେ ଦୁଇବର୍ଷ ହେଲା କଟକରେ ଯାଇ ଚାକିରି କରି ବନୁ ସେ ପିଲାଦିନର ଋଣ ଶୁଝିବାକୁ ଆରମ୍ଭ କଲାଣି । ମାସକ ଦରମା ଟଙ୍କାଯୋଡ଼ିକ ଜଗୁଆ ମା ହାତକୁ ଆସେ ।

ମାତ୍ର ଜଗୁଆ ମା ସେ ଟଙ୍କାକୁ ସାଇତି ସାଇତି ବନୁଆ ପାଇଁ ରଖିଛି । ବନୁଆକୁ ସେ ନିଜ ପୁଅଙ୍କ ସାଙ୍ଗେ ସମାନ କରି ଦେଖେ । ସାଇ ମାଇପେ 'ବନୁଆଟାକୁ ଏତେ ଆଦର କାହିଁକି ?' ବୋଲି ଆକଟ କଲେ ସେ କହେ, "ବନୁଆଟି ପରା ମୋ ମଝିଆଁ ପୁଅ ନଧିଆର ବଡ଼ ଭାଇ । ମୋ ଭଉଣୀପୁଅ କିଏ, ମୋ ପୁଅ କିଏ ମ !" କିନ୍ତୁ ବନୁଅକୁ ନିଜର ବୋଲି ମନେ କଲେ ମଧ୍ୟ ସେ ତା ପଇସାକୁ କେବେ ନିଜର କରେ କୋଏ ନାହିଁ । କହୁବେଳେ ଭୟ 'କଳିକାଳିଟା, ପିଲାଏ ପାରିଗଲେ ବନୁଆକୁ ପର କରିଦେବେ ପରା !"

ବନୁଆ ବର୍ଷକେ ଥରେ ଛୁଟି ପାଏ ଦଶହରାକୁ—ଦଶହରାରେ ଆସି ମାଉସୀଠାରୁ ପାଏ ମାତୃସ୍ନେହ – ନଧିଆଠାରୁ ସେ ତନ ଗୁଣ ବର୍ଷ ବଡ ହେଲେହେଁ ତାର ସାଙ୍ଗେ ଖେଳ, ତାକୁ ଖେଳେଇ ଛୁଟିଟା କଟେଇ ପୁଣି ବୈଚିତ୍ର୍ୟହୀନ କଠିକ କାମକୁ ଚାଲିଯାଏ ।

ଦାଣ୍ଡରେ ଘଡ଼ିଏ ଖଣ୍ଡେ ବୁଲାବୁଲି କରି ପ୍ରାୟ ରାତି ଘଡ଼ିକ ବି'ଜଣ ଯାକ ଘରକୁ ଆସି ବସିଗଲେ ତାସ ଖେଳରେ । ତାସକୁ ଦେଖିଲେ ତା'ର ଜରା ସମ୍ପୂର୍ଣ୍ଣ ଜଣାଯାଉଅଛି । କୌଣସି ପଟର ଚାରିପାଖ ଅଛୁଣ୍ଡା ନାହିଁ । ଖଣ୍ଡେ ଦୁଇଖଣ୍ଡ ଖେଳର ଦାଉରେ ନିଜର ଅର୍ଦ୍ଧାଧିକ ଶରୀର ତ୍ୟାଗ କରିଛନ୍ତି । ବନୁଆ କଟକରୁ ନୂଆ ମୁଠାଏ କିଣି ଆସନ୍ତା, ମାତ୍ର ମାଉସୀ ହେଉଛି କାଳ । ଅଗତ୍ୟା ପୁରୁଣା ମୁଠାରେ ଓରମାନ ମେଣ୍ଟେଇବାକୁ ହେଉଛି । କ୍ରମେ ଖେଳ ଖୁବ ଘନେଇ ଆସିଲା । ଭାରି ଜୋରରେ ତାସ ପଡ଼ିଲା । ବେଳେ ବେଳେ କେଜାଣି କମିତି ଖେଳ ଭିତରୁ କଳି ବାହାରୁଥାଏ । ମାତ୍ର ଜଗୁଆ ମା ପିଣ୍ଡାରେ ବସି ଘୁମୋଉଥିବାରୁ କଳି ସେପରି ଭୀଷଣ ଆକାର ଧାରଣ କରିପାରେ ନାହିଁ ।

ଜଗୁଆ ବାସୁ ମହାଜନଙ୍କ ଘରକୁ ଯାଇଛି । ସେଦିନ ରାତି ଘଟଣା ପରେ ବାସୁଦେବଙ୍କ ଆଖି ବେଶ୍ ଟିକିଏ ଖୋଲିଛି । ତାଙ୍କର ଏବେ ଅଦ୍ଭୁତ ପରିବର୍ତ୍ତନ ! ଆଉ ସେ ଆମ ପରିଚିତ ଯକ୍ଷ ନୁହନ୍ତି । ପୋଲା କାଗଜ କଥା ଦୂରେ ଥାଉ ରେଜିଷ୍ଟ୍ରି କବଲାଗୁଡ଼ାକ ମୂଳେ ମୂଳେ ଏପରି କି ସମୟ ସମୟରେ ମୂଳରୁ ଦଶ ପଚିଶ କମ୍‌ରେ ଫେରସ୍ତ ହୋଇଯାଉଛି । ମହାଜନ କାରବାର ଅନେକ କମିଯାଇଛି । ଟଙ୍କା ପଇସା ଦିଆନିଆ ଯେ ନ ହଉଛି ଏପରି ନୁହେଁ ।

ତେବେ ହାତ ଉଧାର ଓ ଦାନ ମହାଜନ କାରବାର ଉପରେ ଆଧିପତ୍ୟ ବିସ୍ତାର କରିବାକୁ ଆରମ୍ଭ କଲଣି ।

ସେହିଦିନଠାରୁ ବାସୁଦେବଙ୍କର ଜଗୁଆ ଉପରେ ଭାରି ନଜର । ଥରେ ଅନ୍ୟ ମହାଜନେ କହିଲେଣି, "ଜଗୁଆ ଭଲଆ ପିଲା ପିଲାଦିନୁ ମୋ ପାଖରେ ଥିଲେ ମୁଁ ଏପରି ନରରାକ୍ଷସ ହୋଇ ନ ଥାନ୍ତା ।" ବେଳ ଅବେଳରେ ଜଗୁଆକୁ ଡାକେଇ ମହାଜନେ ପରାମର୍ଶ ନେବାକୁ ଆରମ୍ଭ କଲେଣି । ଫଳରେ ଜଗୁଆ ବିଲବାଡ଼ି କାମ ଛାଡ଼ି ବର୍ତ୍ତମାନ ଗୁମାସ୍ତା ଭଲଆ ମହାଜନଙ୍କର କାମ କରୁଛି । ବିରାଡ଼ି ବୈଷ୍ଣବ ପାଲଟିଯିବାରେ ଅନ୍ୟାନ୍ୟ ଗୁମାସ୍ତାଙ୍କର ଦାନା-ପାଣିରେ ଭାରି ଅସୁବିଧା ହେବାରୁ ସେମାନେ ସବୁ ନିଜ ନିଜ ବାଟ ଦେଖିନେବାରୁ ଜଗୁଆ ଉପରେ କାମର ଭାର ଏବେ କେତେ ଦିନ ହେଲା ଠିକଏ ଗୁରୁ ହୋଇ ପଡ଼ିଛି ।

ଅନ୍ୟ ସବୁଦିନ ଫେରୁ ଫେରୁ ଭାରି ଉଚ୍ଛୁର ହୋଇଯାଏ । ମାତ୍ର ଆଜି ବୋଧହୁଏ କୁମାରପୂର୍ଣ୍ଣିମା ଯୋଗୁଁ ଜଗୁଆ ଅପେକ୍ଷାକୃତ ବେଗାବେଗି ରାତି ପହରକ ସରିକି ଫେରି ଆସିଲା । ନିଦ ବିନୁଆ ନିଧିଆଙ୍କ କୁମାର ପୂର୍ଣ୍ଣିମା ଆନନ୍ଦକୁ ମଞ୍ଚିରୁ ଭାଙ୍ଗି ଦେଇଛି । ସେମାନେ ଭିତର ଅଗଣାରେ ଗୋଟିଏ ମଶୁଣି ଉପରେ ନିଘୋଡ଼ ନିଦ ଶୋଇଲେଣି । ଜଗୁଆ ମା ତାଙ୍କର ମୁଣ୍ଡ ଓଡ଼ରକୁ ବସି ଢୁମାଉ-ଥିଲା । ଦାଣ୍ଡଦୁଆରେ ପାଦଶବ୍ଦ ଶୁଣି 'ହଁ, ରେ ଜଗୁ ! ଯାଉଛି' ବୋଲି କହି ଦାଣ୍ଡଦୁଆର ଫିଟାଇବାକୁ ବାହାରିଲା ।

ଦାଣ୍ଡ ଦୁଆର ଫିଟିବା ସାଙ୍ଗେ ସାଙ୍ଗେ ଜଗୁଆ କହିଲା, "ବୋଉ, କଣ କରିବା କହିଲୁ ?"

ଏ ପ୍ରଶ୍ନର ଅର୍ଥ ବୁଝି ନ ପାରି ଚଞ୍ଚଳ ହୋଇ ଜଗୁଆ ମା କହିଲା, "କଣ କରେ ପୁଅ, କଣ ହେଲା କ ?"

ଜଗୁଆ—"ଆଲେ, ମହାଜନେ କହୁଛନ୍ତି, ନଧିଆକୁ ପୁଅ କରିବେ ।"

ଜଗୁଆ ମା ଏଥିରେ ଏକପ୍ରକାର ସ୍ତମ୍ଭୀଭୂତ ହୋଇ କହିଲା, "ଏଁ, କାହିଁକି ରେ ? "

ଜଗୁଆ—କାହିଁକି କଣ ମ ? ଲୋକେ କାହିଁକି ପୁଅ କରନ୍ତି ? ତାଙ୍କର ତ ପୁଅ ନାହିଁ । ଗୋଟିଏ ପୋଷିଆ ପୁଅ କରିବେ ।"

ଜଗୁଆ ମା—ଆରେ ଜଗୁ, ହଁ ଯେ, ତାଙ୍କର ନଧିଆ ଉପରେ କାହିଁକି ଦୃଷ୍ଟି ପଡ଼ିଲା ? ତାଙ୍କ ଘରେ ତ ଧନ ଅଛି । ପୁଅ ଦେବାକୁ ଲୋକେ ଆବୁଡ଼ା ପଡ଼ିବେ । ମୋ ନଧିଆଟି ଓପରେ ତାଙ୍କର କାହିଁକି ଲସ୍ତ ଲାଗିଲା ? ମୁଁ ତ ନଧିଆକୁ ପାଖରୁ ଛାଡ଼ି ପାରିବି ନାହିଁ । ମୋ ପରି ମହାଜନ କଣ ତାକୁ ପାଳିବ ?

ଜଗୁଆ—ମୁଁ ତ ତାଙ୍କୁ ସେହି କଥା କହିଲି । ମତେ ସେ ଆଜ ପଚାରିଲେ ଯେ, ମୁଁ କହିଲି, "ବୋଉ ନଧିଆକୁ ଛାଡ଼ିବ ନାହିଁ । ଆଉ କୁଆଡ଼େଇ ଗୋଟିଏ ଦେଖିଲେ ହେବ ।"

ଜଗୁଆ ମା—ମହାଜନେ କହିଲେ କଣ ?

ଜଗୁଆ—ସେ ମୋ କଥା ଶୁଣି ତୁନ ହୋଇ ରହିଲେ, କିଛି କହିଲେ ନାହିଁ । ନଧିଆ ଉପରେ ତାଙ୍କର ଘରି ମନ ଅଛି ।

ଜଗୁଆ ମା ବୁଝୁ ଗବରେ ଭୁଲିଗଲା । ମହାଜନେ ବଚ୍ଛିଲେ ହଜାରେ ପୁଅ ଆଣି ପାରନ୍ତେ, ମାତ୍ର ମହାଜନେ ହଜାର ହଜାର ପୁଅ ଭିତରେ ତା'ର ପୁଅଟିକି ପସନ୍ଦ କରିଛନ୍ତି । କରନ୍ତେ ନାହିଁ ବା

କମିତ ? ତା ପୁଅ ଭଳିଆ ପୁଅଟିଏ ଗାଁ ଭିତରେ ମିଳିବ ନାହିଁ । ଦେଖିବାକୁ ଯିମିତ, ଗୁଣ ବି ସିମିତ ! ପିଲାଦିନେ ବସନ୍ତ ହୋଇଥିଲା- ଯେ, ସେ ଚିହ୍ନଗୁଡ଼ାକ ତା ସୌନ୍ଦର୍ଯ୍ୟକୁ ଟିକିଏ ହେଲେ ଊଣା କରି ପାରି ନାହିଁ, ଏପରିକି ସୌନ୍ଦର୍ଯ୍ୟ ବଢେଇଛି ।

... ଜଗୁଆ ମା ପଚାରିଲା, "ଜଗୁ ତେବେ କଣ କରିବା କହିଲୁ ।"

ଜଗୁଆ—ତୁ ତ ଇମିତ କହୁଚୁ । ଆଉ ପଚାରିଲେ ମୁଁ ସଫା- କରି ନାହିଁ କରିଦେବି ।

ଜଗୁଆ ମା —ଆରେ, ଏକଥା ଟିକିଏ ବାବୁଙ୍କୁ ପଚାରିଲେ ହନ୍ତା- ନାହିଁ ? ସେ ପଢ଼ାବାଲା, ଭଲ ହବ ନା ମନ୍ଦ ହବ, କହନ୍ତେ ।

ଜଗୁଆ—ସେ ପାଠ ପଢ଼ିଲେ କଣ ହେଲା, ତାଙ୍କ ମନ ଏସବୁ କଥାରେ ପଶେ ନାହିଁ । ହଉ ପଚାରିବା, ମୁଁ ତ କାଲି ସକାଳୁ ଯିବି ।

ଜଗୁଆ ମା—ଆରେ ପୁଅ, ଇଲେ ବିନୁଆ ନଧିଆ ସେଠିକି ଟିକିଏ ଯିବାକୁ କହୁଥିଲେ । ମତେ ନିୟମ କରେଇଛନ୍ତି, ତତେ କହିବାକୁ । ତାଙ୍କୁ ଟିକିଏ ସାଙ୍ଗରେ ନେ । ତୋ ସାଙ୍ଗରେ ତ ଯିବେ, ଭୟ କଣ ?

ଜଗୁଆ ହଁ କଲା । କଥାବାର୍ତ୍ତା ମଧ୍ୟରେ ଜଗୁଆ ପାଇଁ ଠା ସଜଡ଼ା ହୋଇ ଗୋଟିଏ ଥାଳରେ ପୁଞ୍ଜିଏ ଛଅଟି ପିଠା, ମୁଠିଏ ଉଖୁଡ଼ା ଥୁଆ ହୋଇଥିଲା । ଜଗୁଆ ଖାଇବାକୁ ଆରମ୍ଭ କଲାରୁ ମା ପଚାରିଲା; "ଆରେ ପୁଅ, ତୁ ତ ସେ ବାବୁ ପାଖକୁ ଏତେଥର ଯାଉଚୁ, ତାଙ୍କୁ ଟିକିଏ ପଚାରୁନାହୁଁ ସେ କାହିଁକି ଏକୁଟିଆ ଜଙ୍ଗଲ ଭିତରେ ପଡ଼ିଛନ୍ତି ?"

ଜଗୁଆ—ମତେ ପଚାରିବାକୁ ଡର ମାଡ଼ିଲାଣି । ତାଙ୍କ କଥା- ପକେଇଲେ ସେ ଘରି ସଗ ହନ୍ତି । ସେ ସବୁ କଥା ପକାଇଲେ ଯିବା-

ଆସିବାକୁ ମନା କରିଦେବେ ବୋଲି ଉତ୍ତର । ଥରେ ବାହାଘର କଥା ପକେଇଲା ଯେ, ସେ ଭାରି ଗୋଟାଏ ଦୀର୍ଘନିଶ୍ୱାସ ପକେଇଲେ । ମତେ ଭାରି ଦୁଃଖ ଲାଗିଲା ।

ଜଗୁଆ ମା ଶେଷ କଥାଟା ଶୁଣି ଭାରି ଆବେଗରେ ପଚାରିଲା, "କହିବୁଟି, କଣ କହିଲୁ ତୁ ବାହାଘର ବିଷୟରେ ?"

ଜଗୁଆ—ମୁଁ କହିଲି, ବାହା ହୋଇ ହେଲେ କଣ ଭଲରେ ହେବ, ଆଉ କୁଆଡ଼ିକୁ ଯିବ ନାହିଁ ?

ଜଗୁଆ ମା ଏଥିରୁ ସବୁ ବୁଝିଲା । ମୁଣ୍ଡକୁ, ଭାରି ଚିନ୍ତିତ ଥିଲା ପରି, ଦୁଇ ତିନିଥର ହଲେଇ କହିଲା, "ବୁଝିଲି ରେ ପୁଅ, ବୁଝିଲି । ମୁଁ ଆଗ ବିଚାରିଥିଲି, ସେ ଗୋଟେ ଭାରି ଖିଆଲି ମଣିଷ ବୋଲି । ସେ କାହିଁକି ଖିଆଲି ହୁଅନ୍ତେ ? ତାଙ୍କୁ ଭାରି ବାଧିଛି ବୋଲି ସେ ଘରଦ୍ୱାର ଛାଡ଼ି ଜଙ୍ଗଲରେ ରହିଛନ୍ତି । ହଉ ଥାଉ, ଆଉ ତୁ ତାଙ୍କୁ କିଛି କହିବୁ ନାହିଁ ।"

ଏତିକି କହିସାରି ବୁଢ଼ୀ ବସିଲା ଠେଇଁ ଭୂଇଁରେ ଦୁଇ ଚାରିଥର ମୁଣ୍ଡ ଲଗେଇ କହିଲା, "ମହାପ୍ରଭୁ, ବାବୁଙ୍କର ଦୁଖ ଦୂର କର, ମହାପ୍ରଭୁ ! ଏଡ଼େ ଗୁଣର ଲୋକଟାକୁ କାହିଁକି ଇମିତି ସାଧୁଛ ଭଲା ?"

## ସତର

ସକାଳୁ ପୁଅ ପୁତୁରା ହୋଇ ତିନୋଟି ଯାକ ଗୋପାଳଙ୍କ ଜଙ୍ଗଲ ଘରକୁ ବାହାରି ଯାଇଛନ୍ତି । ଜଗୁଆ ମା ତାଙ୍କର ଅପେକ୍ଷାରେ

ବସିଛି । ବୋହୂ ଭାତ ତିଅଣ ରନ୍ଧାରନ୍ଧି କରୁଛି । ବେଳେ ବେଳେ କେତେ ଭାତ ରନ୍ଧାହେବ, କେତୋଟା ସାରୁମୁଣ୍ଡା ତିଅଣ ପାଇଁ କଟା ହେବ, ତିଅଣରେ ଶୁଖୁଆ ପଡ଼ିବ କି ନାହିଁ, ଯଦି ପଡ଼ିବ କେତେ ଅନ୍ଦାଜ ପଡ଼ିବ—ଏସବୁ ବିଷୟରେ ଶାଶୁଠାରୁ ନିଦେଶ ଗ୍ରହଣ କରୁଛି ।

ସନ୍ଧ୍ୟା ପ୍ରାୟ ଗଡ଼ିଗଲାଣି । ଜଗୁଆ ମା'ର ଉତ୍କଣ୍ଠା ବେଳକୁ ବେଳ ବଢ଼ୁଛି । ସବୁଥର ଗୋପାଳଙ୍କ ପାଖରୁ ଫେରିଲା ବେଳକୁ ଜଗୁଆ ଘର ଉତ୍ତର କରେ । ତଥାପି ଦୃଷ୍ଟାନ୍ତରେ ବୁଢ଼ୀର ଶିକ୍ଷାଲାଭ ହୋଇନାହିଁ । କେତେ ପ୍ରକାର ପାପଚିନ୍ତା ବୁଢ଼ୀ ମନକୁ ଅତର୍କିତରେ ଆକ୍ରମଣ କରୁଛି । ବାଟରେ ଆସୁ ଅସୁ କିଏ ଝୁଣ୍ଟି ପଡ଼ିଲା କି ? ଜଙ୍ଗଲରେ ବିଲୁଆ ଫିଲୁଆ ଦେଖି କିଏ ଡରିଲା କି ?

ଘଡ଼ିଏ ଦିଘଡ଼ି ରାତି ହୋଇଗଲା । ବୁଢ଼ୀର ଚିନ୍ତା ଭାଷାରେ ପ୍ରକାଶିତ ହେଲା, "ଆଲୋ, ଆଜି ଆଉ କେହି ଆସିବେ ନାହିଁ । ବାବୁର ଦିହ କଣ ଅସୁଖ ହୋଇଛି ପରା ?"

ଭିତରୁ କଥା ନ ସରୁଣୁ ନଧିଆର ପାଟି ଶୁଣି ବୁଢ଼ୀ ଧଡ଼ ପଡ଼ ହୋଇ ଉଠ ଡିବିଟାଏ ଧରି ଦାଣ୍ଡ ଦୁଆର ଫିଟାଇବାକୁ ଧାଇଁଲା ।

ଘରେ ପଶିଲା ମାତ୍ରେ ନଧିଆ ଫେରାଦ କଲା, "ବୋଉ ମ ! ଏ ବାବୁଟା କମିତି ମଣିଷଟାଏ କହିଲୁ ? ତା ଦିହ ଭାରି ଖରାପ ହୋଇଛି । ଭାଇ ଯେତେ କହିଲା ଆଜି ରାତିକ ସିଠେଇ ରହିବାକୁ, ଟିକିଏ ଶୁଣିଲା ନାହିଁ । ଖାଲି କହୁଥାଏ 'ତମେ କାହିଁକି ରାତିଟା ଘରୁ ଏତେ ଦୂରରେ ଜଙ୍ଗଲରେ କଟେଇବ ?' ବିନୁଆ କହିଲା, 'ବାବୁ, ଛୁଟି

ଯିବି ମୁଁ ତମ ସାଙ୍ଗରେ ରହିବି ।' ତା କଥା କି ଶୁଣିଲି ନାହିଁ । ମୁଁ କହିଲି ଯେ, 'ଜହ୍ନି, ବୋଉ ତତେ ନ ଦେଖିଲେ ମନ ଦୁଃଖ କରିବ, ଯା ଘରି' । ଭାରି ଖରାପ ଲୋକଟାଏ ସିଏ ।"

ଏ ମନ୍ତବ୍ୟରେ ବନୁ ଆଉ ମତଭେଦ ହେଲା । ସେ କହିଲା, "ନାଇଁ ମ, ସେ କାହିଁକି ଖରାପ ଲୋକ ହ'ନ୍ତେ ? ମୁଁ କଟକରେ ଦେଖିଛି ପରା, ମତେ ଯେତେବେଳେ ଦେଖନ୍ତି, ସେତେବେଳେ ହସନ୍ତି ରବିବାରଦିନ ତାଙ୍କ ବସାରେ ପିଲାଙ୍କର ମେଳା ହୁଏ । ସମସ୍ତଙ୍କ ସାଥିରେ ମିଶନ୍ତି, କାହାକୁ ପଦେ ଖୁଦ୍ଧା ଟାଣ କରି କହନ୍ତି ନାହିଁ ।'

ବୁଢ଼ୀ ପଚାରିଲା, "କିରେ, ତୁ ତାଙ୍କୁ କଟକରେ ଦେଖିଥିଲୁ କି ?"

ପ୍ରଶ୍ନର ଉତ୍ତର ଦେଲା, "ଜଗୁଆ ଦେଖନ୍ତା କଣ ମ ? ଯୁ' ବାବୁଘରେ ବନୁଆ ଚାକିରି କରୁଛି, ତାଙ୍କର ଝିଅକୁ ପରା ଆମ ବାବୁ ପଢ଼ା'ଉଥିଲେ । ତାଙ୍କର ସିପାଇ ଗୁଡ଼ାକ ଆସିଛନ୍ତି । ଗଲାମାତ୍ରେ ସେ ବନୁଆକୁ ଚିହ୍ନିଲେ । ବନୁଆକୁ ବାବୁ ଘର କଥା ସବୁ ପଚାରିଲେ । ହେଲେ କଣ ହେବ, ବନୁଆ ନ ଯାଇଥିଲେ ଏକା ଭଲ ହୋଇଥାନ୍ତା ।"

ବୁଢ଼ୀ ଅଧୀର ହୋଇ ପ୍ରଶ୍ନ କଲା, "କାହିଁକି ରେ ?"

ଜଗୁଆ—ସେ ବନୁଆକୁ ତା' ବାବୁଘର କଥା ପଚାରିଲାରୁ ବନୁଆ ଘଣ୍ଟେ ଖଣ୍ଡେ ଲାଗି କେତେ କଣ ଗପିଲା । ଆଉ କେତେ କଣ କହିଥାନ୍ତା । ମଝିରେ ବାବୁଙ୍କ ଦେହ କଣ ହୋଇଗଲା । ମୁଣ୍ଡ ବିଥଉଛି ବୋଲି କହି ସେ ଯାଇ ମୁହଁ ମାଡ଼ି ଶୋଇଲେ । ମତେ ଜଣାପଡ଼ିଲା, ଯିମିତି ସେ ଭାରି ରାଗିଗଲେ । ତାଙ୍କ ଆଖି ନାଲି ଦିଶୁଥାଏ, ପୁଣି ଛଳ ଛଳ ହେଉଥାଏ ।

ବୁଢ଼ୀ ବୁଝିଲା, ପୁଅକୁ ଯାହା ରାଗପରି ଜଣାଗଲା ସେ ଆଉ କିଛି—ରାଗ ନୁହେଁ । ପୂର୍ବ ରାତି କଥାରେ ତା ମନରେ ଯେଉଁ ସନ୍ଦେହ ହୋଇଥିଲା, ତାହା ଠିକ୍ ଏ ଘଟିଗଲା । ସେ ବନୁଆ କଣ କହିଛି, ଜେରା କରିବାକୁ ଲାଗିଲା ।

ବନୁଆ ପାରୁପର୍ଯ୍ୟନ୍ତ ଚେଷ୍ଟାକରି ମନେପକେଇ ପକେଇ ଯାହାସବୁ କହିଲା, ସେ ସବୁଥିରେ ବୁଢ଼ୀର ମନ ବୋଧ ହେଲା ନାହିଁ । ସେ ବାରମ୍ବାର ପ୍ରଶ୍ନ କରୁଥାଏ । ବନୁଆ ମନେ ପକେଇ ପକେଇ ମଦନ ବାବୁଙ୍କ ଘର ବାଡ଼ପୁରେ ଯାହା ଗୋପାଳଙ୍କୁ କହିଥିଲା, ଯାହା ନ କହିଥିଲା, ଏପରି ଶ୍ରେଷ୍ଠ ବଡ଼ ଅନେକ ଦୈନନ୍ଦିନ ଘଟଣା ଆବୃତ୍ତି କରୁଥାଏ ।

ଶେଷକୁ ଜଗୁଆ କହିଲା, "କିରେ, ତୁ କହିଲୁ ପରା ତମ ଦାଦାଙ୍କ ବାହାଘର କଥା । ସେତିକି ବେଳକୁ ତ ଠିକ୍ ବାବୁ ଦାଦା ଖରାପ ବୋଲି କହି ବାହାରି ଗଲେ ।"

ବନୁଆ—ଆରେ ହଁ ତ ! ହଁ ମାଉସୀ, ସେକଥା ବ କହିଥିଲି ।

ଜଗୁଆ ମା—କଣ କହିଥିଲୁ ମନେ ପକେଇଲୁ ଦେଖି !

ବନୁଆ—ଆଉ କଣ କହିଥିଲି କି ? ମୁଁ କହିଲି, ବାବୁ, ଆମ ଦାଦାଙ୍କ ବାହାଘର ମାର୍ଗଶିର ମାସରେ ହେବ । ବୀରବାବୁ ବର । ବୀରବାବୁ ବେଳ ଅବେଳ ସବୁବେଳେ ବାବୁଙ୍କ ଘରକୁ ଆସୁଛନ୍ତି । ଏଥର ସେ ବୁଲି ଯାଇଛନ୍ତି, ଫେରିଲେ ତ ବାହାଘର ଆୟୋଜନ ହେବ । ମୁଁ ଗଲେ କହିବ, ଦାଦା ତମ ପାଖକୁ ନିମନ୍ତ୍ରଣ ପଠାଇବେ ।

ଜଗୁଆ ମା ଘରି ଚିନ୍ତିତ ହୋଇ ଘଡ଼ିଏ ଖଣ୍ଡେ ବସି ରହିଲା । ପିଲାମାନେ ଗୋଡ଼ ହାତ ଧୁଆ ଧୋଇ କରି ଖାଇବା ଜାଗାରେ ବସିଗଲେଣି । ବୁଢ଼ୀ ଆଜି ପରିବେଷଣ କାର୍ଯ୍ୟର ତତ୍ତ୍ୱ ନେବାକୁ ନାହିଁ, ଖାଲି ଗୁଣୁ ଗୁଣୁ ହୋଇ କହୁଥାଏ, ବାଃ ରେ, ପୁଅ, ସବୁ ପୁରୁଷ ଯଦି ଏପରି ସ୍ନେହ କରି ଶିଖିଥାନ୍ତେ, ତାହାହେଲେ ଏ ସଂସାରରୁ କେତେ ପାପ କମିଯାନ୍ତା । ସେ ଅଣ୍ଟା ହୃଦୟ ଚହଲି ପାରିଲା

ନାହିଁ । ଏଡ଼େ ସୁନ୍ଦର ମଣିଷଟାକୁ ଜୀବନଟା ଜଙ୍ଗଲରେ ବାଘ ଭାଲୁଙ୍କ ସାଙ୍ଗରେ କଟାଇବାକୁ ଛାଡ଼ିଦେଲି । ମଲି ମୋର !"

ବୁଢ଼ୀ ମନରେ ଟିକିଏ କଣ ସନ୍ଦେହ ହେଲା, ସେ ପିଲାଙ୍କ ଖାଇବା ଜାଗାକୁ ଆସି ପଚାରିଲା, "ହଉରେ ବାବା ! ଗୋପାଳ ବାବୁ ତମ ଭାଇଙ୍କି ପଢ଼ାଇବା କାହିଁକି ବନ୍ଦ କରି ଦେଲେ ତୁ ଜାଣୁ ?"

ବାବୁଆ—କେଜାଣି କାହିଁକି ? ଥରେ ମୁଁ ତାଙ୍କୁ ବଜାରରେ ଦେଖିଥିଲି । ଆମ ବାବୁଙ୍କ ଘରକୁ କାହିଁକି ଯାଉ ନାହିଁ ବୋଲି ପଚାରିବାରୁ ସେ କହିଲେ, 'ହଁ, ଯାଉନାହିଁ ତ' । ମୁଁ କିଛି ବୁଝି ପାରିଲି ନାହିଁ । ଆଉ ପଚାରିଥାନ୍ତି । ତାଙ୍କ ଶୁଖିଲା ମୁହଁ ଦେଖି ଏବଂ ସେ ସବୁବେଳେ ଯିମିତି ହସନ୍ତି ସିମିତି ନ ହସିବାରୁ ମୁଁ ଡରି କରି ଆଉ କିଛି ପଚାରିଲି ନାହିଁ । ସେଇ ଦିନଠାରୁ ଆଜିପର୍ଯ୍ୟନ୍ତ ଆଉ କଣ ମୁଁ ତାଙ୍କୁ ଦେଖିଥିଲି କି ?

ଜଗୁଆ ମା କହିଲା, "ବାବା, ତୁ ଏଥର ଗଲେ ତମ ଭାଇଙ୍କୁ କହିବୁ, ମୋ ମାଉସୀ କହୁଛି, ତାଙ୍କୁ ଯଦି ତମେ ଚାକରି ରଖାନ୍ତ, ସେ କଟକରେ ଆସି କିଛି ଦିନ ରହନ୍ତା ।"

ଜଗୁଆ କିଛି ବୁଝି ନପାରି କହିଲା, "କାହିଁକି ମ ବୋଉ, ତୁ କାହିଁକି ଚାକରି କରିବୁ ? ତୋ'ର ଇଠେଇ କଣ ଅସୁବିଧା ହଉଛି କହିଲୁ ? ଯେତେବେଳେ ଆମେ ପିଲା ଥିଲୁ ସେତେବେଳେ ତୁ ଚାକରି କରିନାହୁଁ, ଏଇଲେ ତ ଆମେ ଯା ବସ୍ଥିରବା ତା' କରିପାରିବା । ବାବୁଆ ଚାକରି କଲାଣି, ମୁଁ ମହାଜନ ଘରେ ରହିଲାଣି । ମହାଜନ ତ କେତେ ଥର ଟଙ୍କା ଯାଚେ । ମୁଁ ଦରକାର ନାହିଁ ବୋଲି ଆଣେ ନାହିଁ । ତୋର କ'ଣ ଅଭାବ କହିଲୁ ଦେଖି ? ଏ ବୟସରେ ତୁ ପିବୁ ଚାକରି କରିବୁ ।"

ଜଗୁଆ ମା—ନାହିଁରେ ପୁଅ, ମୁଁ ଅଭାବ ପାଇଁ ଗୁହାରି କରି ଯାଉ ନାହିଁ ମ । ମୋର ଗୋଟାଏ କଣ ଅଭାବ ଅଛି ? ମୋର ତ ତମେ ସବୁ ଅଛ । ତମ ବାହା ମୁଣ୍ଡ ଭଲ ରହିଲେ, ତମେ ଭାତ ଶାଗ କରି ଗୁଣ୍ଡିଏ ଖାଇଲେ ମୋର ସବୁ ଭଲ । ମୁଁ ଯାଉଛି ଆମ ବାବୁ ପାଇଁ । ମୁଁ ଗଲେ ତାଙ୍କର ଯଦି କିଛି ଉପକାର ହୋଇ ପାରନ୍ତା, ଭାରି ଭଲ ହନ୍ତା ।

ଜଗୁଆ—ତୁ ଗଲେ ବାବୁଙ୍କର କମିତି ଉପକାର ହେବ ମ ?

ଜଗୁଆ ମା ଉତ୍ତର ଦେଲା, "ମୁଁ ଠିକ୍ କରି କହିପାରୁ ନାହିଁ । ତେବେ ତମମାନଙ୍କଠାରୁ ଯାହା ଶୁଣୁଛି, ସେଥିରେ ମୁଁ ଜାଣୁଛି ଯେ, ଆମ ବାବୁ ଯୁଝି ଅଟିକୁ ପଢ଼ାଉଥିଲେ ତାକୁ ବାହା ହେବାର ମନ କରିଥିଲେ । ସେ କଥା ଭାଙ୍ଗି ଯାଇଛି । ମୁଁ ଭାବୁଛି, କଟକ ଗଲେ ଏ କଥାର ଗୋଟିଏ କିଛି କିନାରା କରିଦେବି ।

ଜଗୁଆ ଭାରି ଆଶ୍ଚର୍ଯ୍ୟ ହୋଇ କହିଲା, "ଆଚ୍ଛା ଲୋକ ତ ! ଗୋଟିଏ ଜାଗାରେ ଭାଙ୍ଗିଗଲେ ଆଉ ଠାଏ କଣ ହନ୍ତା ନାହିଁ ? ଇଥିପାଇଁ ଏକବାରେ ବାଆଁଜ !"

ଜଗୁଆ ମା ଟିକିଏ ହସି ହସି କହିଲା, "ଆରେ ପୁଅ, ସେ କଥା ତୁ ବୁଝିବୁ ନାହିଁ । ଆମେ ସବୁ ଗାଈ ବଳଦ କିଣିଲା ଭଳିଆ ଆମ ପିଲାଙ୍କ ପାଇଁ କନ୍ୟା ବନଜାଗା ବାଛି କରି ଆଣୁ । ସେମାନେ ସବୁ ପରା ନିଜେ ବାଛନ୍ତି, ଯେଉଁଠାରେ ମନ ପାଇଲା ସିଠେଇ ବାହା ହୁଅନ୍ତି । ସିମିତି ମନ ପାଇଲା ଜାଗାରେ ଯଦି ଭାଙ୍ଗିଯାଏ, ମନଦୁଃଖ ହେବ ନାହିଁ ?"

ଜଗୁଆ—ଆମ ପ୍ରକାରଟି ଏକା ତାଙ୍କ ଅପେକ୍ଷା ଭଲ ।

ଜଗୁଆ ମା—ଭଲ ମନ୍ଦରେ ଆମର କଣ ଅଛି ରେ ପୁଅ ? ତାଙ୍କର ଗୋଟିଏ ପ୍ରକାର, ଆମର ଗୋଟିଏ ପ୍ରକାର । ଦୁଇ ପ୍ରକାର-ଯାକ ଅଛନ୍ତି । ମୁଁ ଏତିକ ଜାଣେ, କିଏ ଭଲ, କିଏ ମନ୍ଦ ଠିକ୍ କରିବାରେ କିଛି ଲାଭ ନାହିଁ ।

ବନୁଆ ମାଉସୀ କଥା ଅନୁସାରେ 'ବଦି'ଙ୍କି କହିବ ବୋଲି ଘରି ଆନନ୍ଦରେ ସମ୍ମତ ହେଲା ।

# ଅଠର

ମଦନ ବାବୁଙ୍କ ମଟରଭ୍ରମଣ ଶେଷ ହୋଇଛି । ନାନା ସ୍ଥାନରେ ବୁଲି ପ୍ରାୟ ପନ୍ଦର ଦିନ କଟାଇ ସେ ଆଜି ଫେରୁଛନ୍ତି ଘରକୁ । ଆଜିପର୍ଯ୍ୟନ୍ତ ସେ କଟକରୁ ମେଲକୁ ବେଶୀ ବାହାରିନଥିଲେ । ତେଣୁ ଦେଖିବାର ଇଚ୍ଛା ତୃପ୍ତ ହୋଇ ନାହିଁ । କିନ୍ତୁ କଲେଜ ଯେ ଖୋଲିଯିବ ! ବୀରେନ୍ଦ୍ର ଅଛନ୍ତି, ସେ କଲେଜରେ ଯୋଗଦାନ କରିବେ—ନ ଗଲେ ନ ଚଳେ ।

ବାଣପୁରଠାରୁ ଆଜି ସକାଳୁ ମଟର ଛୁଟିଛି । ଆଉ ଦୁଇଘଣ୍ଟା ଚାଲିଲେ କଟକ ହୋଇଯିବ । ମଦନ ବାବୁ ମଟର ଅଟକାଇବାକୁ ଡ୍ରାଇଭରକୁ ହୁକୁମ ଦେଲେ । ଡ୍ରାଇଭର ପଛରେ ଆସୁଥିବା ଲରିବାଲାକୁ ସଙ୍କେତ ଦେଇ ମଟର ଅଟକାଇ କହିଲା, "ବାବୁ, ଆଉ କଟକ ମୋଟେ ଛତିଶ ମାଇଲ ଅଛି ।"

ମଦନବାବୁ—ଥାଉ । ନଈପାର ହେବାକୁ ଢେର ଡେରି ଲାଗିବ । ଏଇଠାରେ ଟିକି ପାଞ୍ଚ ଘଣ୍ଟା ରହିଯିବା । ବର୍ତ୍ତମାନ ଘଣ୍ଟା କେତେ ବାଜିଛି ?

ସୀରେନ୍ଦ୍ର କହିଲେ, "ସାଢ଼େ ଆଠଟା ।"

ମଦନ ବାବୁ—ବେଶ୍ ! ଗୋଟାଏ ବେଳକୁ ଗଲେ ଠିକ୍ ସନ୍ଧ୍ୟାକୁ ନଈପାର ହୋଇ ସାରଥିବା । ମାଧିଆ ! ଷ୍ଟେଷଣରେ ସବୁ ବନ୍ଦୋବସ୍ତ କର । ପାଖରେ ବେଶ୍ ଭଲ ପୋଖରୀଟାଏ ଅଛି । ଏପରି ଜଙ୍ଗଲ ଭିତରେ ଏଡ଼େ ସୁନ୍ଦର ପୋଖରୀଟାଏ ଅଇଲା କୁଆଡ଼ୁ ?

ମଦନ ବାବୁ ଜାଣନ୍ତି ନାହିଁ, ସେ ପୋଖରୀଟି ବେବର୍ତ୍ତା ପୋଖରୀ । ଓଡ଼ିଶା ରାଜାଙ୍କ ବେବର୍ତ୍ତା । ପୋଖରୀର ଅଳ୍ପ ଦୂରରେ ଯେଉଁ ସ୍ତୂପ କାଳ ସଙ୍ଗେ ଯୁଦ୍ଧ କରି କରି ହାରି ପଡ଼ିଛି, ତାହା ବେବର୍ତ୍ତାଙ୍କ ବାସଗୃହର ଭଗ୍ନାବଶେଷ । ଖୋର୍ଦ୍ଧା ରାଜାମାନଙ୍କ ଅମଳରେ ଏ ଜଙ୍ଗଲ ଜାଗା ଖଣ୍ଡ ଭାରି ପ୍ରସିଦ୍ଧି ଲାଭ କରିଥିଲା । ଦେବାନ ଥିଲେ କୁମ୍ଭଡ଼ମଲ୍ଲର । ବେବର୍ତ୍ତା ଦୁଇ ପାହାଡ଼ର ମଧ୍ୟବର୍ତ୍ତୀ ଜାଗାଖଣ୍ଡ ବାଛି ନେଇ ରାଜକୋଷକୁ ନିରାପଦରେ ରକ୍ଷା କରୁଥିଲେ । ଅଳ୍ପ ଦୂରରେ ଯେଉଁ ବୁଢ଼ା ବରଗଛଟି ଦିଶୁଛି, ଯାହାର ଟଣ୍ଡି ଛିନ୍ନଭାଗରେ ବିଦୀର୍ଣ୍ଣ ହୋଇଛି, ସେହି ଗଛଟି ଗୋଟିଏ ଐତିହାସିକ ଗଛ । ତା'ର ନାମ 'ମନ୍ତ୍ରଧା ବର' । ଏହି ବରଗଛ ମୂଳରେ ବାଙ୍କୀ ବିଜୟୀ ବେଳେ ମନ୍ତ୍ରଣାସଭା ବସିଥିଲା । ସେ ଦିନ ଯାଇଛି । ସେ ସ୍ମୃତି ମଧ୍ୟ ଯାଇଛି । ଏବକାଳ ଲୋକେ ଇଂଲଣ୍ଡର ଯୁଦ୍ଧରେ କେଉଁ ପକ୍ଷ କେଉଁ ରଙ୍ଗର ଗୋଲାପଫୁଲ ମୁଣ୍ଡରେ ଖୋସି ଯୁଦ୍ଧ କରୁଥିଲେ ତାହା ଜାଣନ୍ତି ; ମାତ୍ର ଏହି ଉତ୍କଳ ବକ୍ଷରେ ଯେଉଁ ସବୁ ଯୁଦ୍ଧଲୀଳା ଘଟିଯାଇଛି, ତା'ର କିଛି ବିବରଣ ଜାଣନ୍ତି ନାହିଁ କିମ୍ବା ଜାଣିବା ନିମନ୍ତେ ଥରେ ବି କୌତୂହଳ ପ୍ରକାଶ କରି ନାହାନ୍ତି । ମଦନ ବାବୁ ଇଂଲଣ୍ଡର ଇତିହାସ ଘୋଷି ଘୋଷି ପେନସନ୍ ମୁଠାକ ମୁଠେଇ

ତା'ର ଯଶଗାନ କରୁଛନ୍ତି, ସେ ଏ ସ୍ଥାନକୁ ବୁଝନ୍ତେ କୁଆଡ଼ୁ ? ଏ ସ୍ଥାନ ବିଷୟ ପଢ଼ିଲେ ପେନ୍‌ସନ୍ ତ ମିଳିବ ନାହିଁ । ଏ ସ୍ଥାନର ମହିମା ଗାନ କଲେ ପ୍ରଶଂସା ତ ମିଳିବ ନାହିଁ । ମିଳିବ, ବେତମାଡ଼ ବା କାରାବାସ !

ମଟର ରହିଲା । ମଦନ ବାବୁଙ୍କ ହୁକ୍କା ତିଆର କରି ଦେଇ ମାଧିଆ ଷ୍ଟୋଭରେ ଚା ଗାଡ଼ି ଆରମ୍ଭ କଲାଣି । ମଟର ଡ୍ରାଇଭର ଦୁଇଟା ପେଟ୍ରୋଲଟିଣ ଭିତରେ ଲୁଚାଇ ରଖିଥିବା ନାଲିପାଣି ଟିକିଏ ଧରି ଗୋଟାଏ ଗଛମୂଳକୁ ବାହାରି ଯାଇଛନ୍ତି । ବୀରେନ୍ଦ୍ର କ୍ୟାନ୍‌ଭାସ୍ ବେଗ ଭିତରୁ ବନ୍ଧୁକ ବାହାର କରି କାନ୍ଧରେ ପକାଇ ଯିବାକୁ ଉଦ୍ୟତ ହେଲେ ।

କନକଙ୍କୁ ଏ ସ୍ଥାନରେ କିପରି ଗୋଟାଏ ବିଷାଦ ଭାବ ହଠାତ୍ ଆସି ଆକ୍ରମଣ କରିଥାଏ । କାହା ସଙ୍ଗେ କଥାବାର୍ତ୍ତା ହେବାକୁ ତାଙ୍କ ମନ ହେଉନଥାଏ । ସୁତରାଂ ସେ ବୀରେନ୍ଦ୍ରଙ୍କୁ କିଛି କହିଲେ ନାହିଁ । ବୀରେନ୍ଦ୍ର କନକ ଆଗରେ ନିଜର କାର୍ଯ୍ୟକଳାପ ବିଷୟରେ ଦି' ଚାରିପଦ କଥାବାର୍ତ୍ତା ହେବା ଉଦ୍ଦେଶ୍ୟରେ କହିଲେ, "କନକ, ମୁଁ ଯାଉଛି ଶୀକାରକୁ ।" କନକ ଟିକିଏ ହସିଦେଇ ତୁନି ରହିଲେ । କନକଙ୍କ ସଙ୍ଗେ କଥାବାର୍ତ୍ତାର ଯୋଗାଡ଼ ନ କରିପାରି ବୀରେନ୍ଦ୍ର ମଦନ ବାବୁଙ୍କ ଦୃଷ୍ଟି ଆକର୍ଷଣ କରିବା ଉଦ୍ଦେଶ୍ୟରେ ମାଧିଆକୁ ପାଟିକରି କହିଲେ, "ମାଧିଆ, ମୁଁ ଘଣ୍ଟେ ଖଣ୍ଡେ ପରେ ଆସିବି । ମୋତେ ଅପେକ୍ଷା କରିବ ନାହିଁ ।"

ମଦନ ବାବୁ ଏ କଥା ଶୁଣି ପଚାରିଲେ, "କାହିଁକି, କୁଆଡ଼େ ଯାଉଛ କି ବୀରେନ୍ଦ୍ର ?"

ବୀରେନ୍ଦ୍ର—ଆଜ୍ଞା, ଯାଉଛି ଟିକିଏ ବୁଲି ।

ମଦନବାବୁ ବୀରେନ୍ଦ୍ରଙ୍କ କାନ୍ଧରେ ବନ୍ଧୁକ ଦେଖି କହିଲେ, "କଉ, ଏ କଣ ! ଶୀକାରକୁ ବାହାରିଲ କି ? ତୁମେ କଣ ଶୀକାର କର ବାବା ?"

ବୀରେନ୍ଦ୍ର—ଆଜ୍ଞା ହଁ, ମୁଁ ମାଳଗିରି ରାଜାଙ୍କ ସଙ୍ଗେ ସେଠା ଜଙ୍ଗଲକୁ ଅନେକ ଥର ଯାଇଛି ।

ମଦନବାବୁ—ଓଃ, ତେବେ ତ ତୁମେ ବେଶ୍ ଜାଣ । ଯେ ମାଳଗିରି ଜଙ୍ଗଲ ଭିତରେ ପଶିଛି, ତା'ର ଏ ଛୋଟ ବୁଦୁବୁଦିଆ ଲଟାକୁ ଭୟ କଣ ? ମୋ' ପିଲାଦିନେ ମୁଁ ଥରେ ଅଧେ ଯାଇଥିଲି । ଏଇ ଯେଉଁ ବନ୍ଧୁକ ତୁମେ ଧରିଛ, ସେଇ ବନ୍ଧୁକରେ ଯୋଡ଼ାଏ ବାଘ ମରିଛନ୍ତି । ସମୟ ତ ଗଲା । ମୁଁ ଏଥର କଟକ ଗଲେ ବନ୍ଧୁକଟା ତମ ନାଁରେ ଲାଇସେନ୍ସ କରେଇଦେବି । ଏ ଜଙ୍ଗଲରେ କିଛି ନ ଥିବ, ଯିବ ଯେବେ ଯାଅ ଟିକିଏ ଶୀଘ୍ର ଫେରି ଆସିବ ।

ବୀରେନ୍ଦ୍ର ଶୀକାରକୁ ବାହାରିଲେ । ଜଙ୍ଗଲରେ ଆଉ ଟିକିଏ ବଡ଼ ଗଛ ଥିଲେ ତାଙ୍କର ସାହସ ହୋଇନଥାନ୍ତା । ଏ ଜଙ୍ଗଲରେ ଭୟର କୌଣସି ଆଶଙ୍କା ନାହିଁ ବୋଲି ବରଂଚ ତାଙ୍କର ସାହସ ହୋଇଥିଲା । ସେ ବନ୍ଧୁକ ମାରି ଶିଖିଥାନ୍ତି, ଥରେ ଦୁଇଥର ଜଙ୍ଗଲ ଭିତରେ ମଧ୍ୟ ପଶିଛନ୍ତି ଏବଂ ବାସ୍ତବିକ୍ ଥରେ ମାଳଗିରି ରାଜାଙ୍କ ସଙ୍ଗେ ଜଙ୍ଗଲଭିତରେ ପଶିଥିଲେ । ମାତ୍ର କୌଣସି ବନ୍ୟ ଜନ୍ତୁ ଆଜିପର୍ଯ୍ୟନ୍ତ ତାଙ୍କ ନୟନଗୋଚର ହୋଇ ନାହିଁ । ମାଳଗିରି ଜଙ୍ଗଲରେ ସେ ମଞ୍ଚାରେ ବସିଥିଲେ ; ତାଙ୍କ ସାଥିରେ ଥିବା ବାଉଁଆ କୌଣସି ସଙ୍କେତକୁ ଜାଣି ଧୀରେ ଧୀରେ କହିଲା, "ବାବୁ, କିଛି ଶବ୍ଦ କରନାହିଁ, ଜନ୍ତୁ ଅସୁଛି ।" ବୀରେନ୍ଦ୍ର ବାଉଁଆ କଥା ଅନୁସାରେ ଶବ୍ଦ ନ କରିଥିବାରୁ ଅନେକ ଥର ଗର୍ଜ

କରନ୍ତି; ମାତ୍ର ବାଘୁଆ କଥାରେ ତାଙ୍କ ଲୁଗା ଖଣ୍ଡି ଯାକ ଭିଜି ମଞ୍ଚା ତଳେ ଥିବା ଶୁଖିଲା ପତ୍ରଉପରେ ଯେ ବର୍ଷା ହେଲା, ସେ କଥା କହନ୍ତି ନାହିଁ । ବୀରେନ୍ଦ୍ରଙ୍କ ଅବସ୍ଥା ବୁଝି ବାଘମାମୁଁ ଦୟାକରି ସେଦିନ ସ୍ୱରୂପ ଦେଖାଇଲା ନାହିଁ । ଦେଖାଇଥିଲେ ଖୁବ୍ ସମ୍ଭବ ଶୀକାରୀ ବୀରେନ୍ଦ୍ରବାବୁ ମଞ୍ଚାରୁ ତଳକୁ ବୁହାହୋଇ ଆସିଥାନ୍ତେ ।

ଯାହାହେଉ ମଦନବାବୁଙ୍କ ଉତ୍ସାହ ବାଣୀରେ ଉତ୍ଫୁଲ୍ଲ ହୋଇ ତାଙ୍କୁ ସାହସ ଦେଖାଇବା ଉଦ୍ଦେଶ୍ୟରେ ତାଙ୍କ ଦୃଷ୍ଟିରୁ ଅଗୋଚର ହେବା ପର୍ଯ୍ୟନ୍ତ ବୀରେନ୍ଦ୍ର ଖୁବ୍ ବୀରଦର୍ପରେ ଜଙ୍ଗଲ ଭିତରେ ପଶିଲେ । ପ୍ରାୟ ମାଇଲାଏ ଯିବା ପରେ ପଛକୁ ଚାହିଁ ଦେଖିଲେ, ମଞ୍ଚର ଆଉ ଦିଶୁ ନାହିଁ ।

ଏଥର କଣ କରାଯାଏ ? ନିକଟରେ ଗୋଟାଏ କିଛି ପକ୍ଷୀ ଯଦି ମିଳିଯାନ୍ତା, ତାହାହେଲେ ଶୀକାରୀ ନାମଟା ସାର୍ଥକ ହୁଅନ୍ତା ଏବଂ ସେ ବୃଥାରେ ଅନ୍ୟ କୌଣସି ବିପଦର ସମ୍ମୁଖୀନ ନ ହୋଇ ଫେରିଯାନ୍ତେ ।

କିନ୍ତୁ ତାଙ୍କୁ ଶୀକାର-ପଥରେ ପଥପ୍ରଦର୍ଶୀ କରିବା ନିମନ୍ତେ ନିକଟରେ କାହିଁ କେହି ତ ମିଳିଲେ ନାହିଁ ! ବୀରେନ୍ଦ୍ର ଚାରି ଦିଗକୁ ଖୁବ୍ ନିରୀକ୍ଷଣ କଲେ । ପ୍ରାୟ ଦୁଇ ଫର୍ଲଙ୍ଗ ଦୂରରେ ଗୋଟିଏ ଗଛରେ ଦୁଇ ଚାରିଟା ପକ୍ଷୀ ବସିଥିଲା ପରି ଜଣା ଯାଉଥାଏ । ବୀରେନ୍ଦ୍ର ଖୁବ୍ ଦମ୍ଭଧରି ସେହି ଗଛ ଉଦ୍ଦେଶ୍ୟରେ ଚାଲିଲେ ।

ଗଛମୂଳରେ ଯାହା ଦେଖିଲେ, ସେଥିରେ ତାଙ୍କ ମନ ଖୁସ୍ ହୋଇଗଲା । ଗଛରେ ପ୍ରାୟ ଶହେ ଖଣ୍ଡେ ହରଡ଼ ଚଢ଼େଇ ବସିଛନ୍ତି । ଟିକେ ଅଡ଼ିକୁ ବନ୍ଧୁକ ଦେଖାଇ ଯେକୌଣସିମତେ ଥରେ

ପାଦ ଦେଲେ ନିଶ୍ଚୟ ଦୁଇ ଗୁଳି ପକ୍ଷୀ ତଳକୁ ଖସି-ପଡ଼ିବେ ।

ବୀରେନ୍ଦ୍ର ବନ୍ଧୁକ ସଜାଡ଼ି ଧରିଛନ୍ତି । ଟୋଟା ଭର୍ତ୍ତି ହୋଇଛି, ଘୋଡ଼ା ଉପରେ ବୀରେନ୍ଦ୍ରଙ୍କ ହାତ ପଡ଼ିଛି, ଆଉ ମୁହୂର୍ତ୍ତକରେ ଗୁଳି ଫାଏର ହୋଇଯିବ, ଏପରି ସମୟରେ ହଠାତ୍ ପଛ ଆଡ଼େ ଘାସ ଖସ୍ ଖସ୍ ଶବ୍ଦ ଶୁଭିଲା, ସତେ ଯେପରି ଗୋଟାଏ କିଛି ବନ୍ୟ ଜନ୍ତୁ ତାଙ୍କ ଆଡ଼କୁ ଧାଇଁ ଆସୁଛି । ବୀରେନ୍ଦ୍ରଙ୍କ ବୁଦ୍ଧି ହଜିଗଲା । ସେ 'ଆଲେ ବୋଉଲେ' କହି ଦୁଲ କିନା ପଛ ଆଡ଼କୁ ପଡ଼ିଗଲେ ।

ବନ୍ଧୁକର ଆବାଜ୍ ପ୍ରତିଧ୍ୱନିତ ହୋଇ ଆକାଶରେ ମିଶି ନ ଯାଉଣୁ ଗୋଟିଏ ଲୋକ କାଖରେ ଛାଲୁ ଗୋଟିଏ ଧରି ଗ୍ଲେଟେଇ ଗ୍ଲେଟେଇ ଧାଇଁ ଆସି ବୀରେନ୍ଦ୍ରଙ୍କ ପାଖରେ ପହଞ୍ଚିଲେ । ସେ ଗୋପାଳ । ତାଙ୍କ ଛାଲୁଛୁଆ ଭିତରୁ ଗୋଟିଏ ଦୈବାତ୍ ଘରୁ ଖସିଯାଇ ଜଙ୍ଗଲରେ ପଶିଲା । ସେ ବଡ଼ ସକାଳୁ, ତା'ର ପଛେ ଗୋଡ଼ାଇ ଗୋଡ଼ାଇ ଶେଷରେ ତାକୁ ଧରିଲାବେଳକୁ ଭୟତ୍ରସ୍ତ ସ୍ୱରରେ 'ଆଲେ ବୋଉଲେ' ଡାକ ତାଙ୍କୁ ଶୁଭିଲା । ଶବ୍ଦ ପଛେ ପଛେ ବନ୍ଧୁକର ଆବାଜ ହେଲା ଏବଂ ବନ୍ଧୁକ ଗୁଳିଟେ ତାଙ୍କ ନଳି ଗୋଡ଼ରେ ଘଷିହୋଇ ଯାଇ ନିକଟରେ ଥିବା ଗୋଟାଏ ପଥରରେ ବାଜିଲା । ଗୋପାଳ ଯନ୍ତ୍ରଣାରେ ଗୋଟିଏ ଅସ୍ପଷ୍ଟ ଚିତ୍କାର କରି ଛାଲୁଛୁଆଟିକୁ ହାତରେ ଧରି ବନ୍ଧୁକଗୁଳି ଯେଉଁ ଦିଗରୁ ଆସିଥିଲା, ସେହି ଦିଗରେ ଧାଇଁଲେ ।

ଏ ନିର୍ଜନତା ଭଗ୍ନ କଲା କିଏ ? ବନ୍ଧୁକ ଧରି କିଏ କାହା ଉପରେ ପ୍ରତିହିଂସା ନେବାକୁ ଏ ଜଙ୍ଗଲର ନିର୍ଜନତା ଭଗ୍ନକରିଛି । ଯେ କରୁଣ କଣ୍ଠରେ 'ଆଲେ ବୋଉଲେ' ବୋଲି ଚିତ୍କାର କରିଛି,

ସେ କେଉଁଠାରେ ? ସେହି ବିରାଟ ପ୍ରତି ନିଶ୍ବାସ ବନ୍ଧୁକ ଗୁଳି ଫାଏର ହୋଇଥିଲା । ଭାଗ୍ୟକୁ ଲକ୍ଷ୍ୟଭ୍ରଷ୍ଟ ହୋଇଛି । ନ ହେଲେ କାହାର ପ୍ରାଣବାୟୁ ଉଡ଼ି ଯାଇ ବନ୍ଧୁକ ଶବ୍ଦ ପଛେ ପଛେ ଆକାଶରେ ମିଶି-ଯାଇଥାନ୍ତା । ଏହିପରି କେତେପ୍ରକାର ଚିନ୍ତା କରି କରି ଗୋପାଳ ଯାଇ ଦେଖିଲେ, ବୀରେନ୍ଦ୍ର ପଡ଼ିଛନ୍ତି, ତାଙ୍କ ଛାତି ଉପରେ ବନ୍ଧୁକଟା ପଡ଼ିଛି —ବନ୍ଧୁକନଳରୁ ଧୂଆଁ ବାହାରିବା ବନ୍ଦ ହୋଇନାହିଁ ।

ବୀରେନ୍ଦ୍ରଙ୍କୁ ଦେଖିବା ମାତ୍ରେ ସେ ଚିହ୍ନି ପାରିଲେ । ଗତ କେତେଦିନ ହେଲା ଏହି ବୀରେନ୍ଦ୍ରଙ୍କର ସୌଭାଗ୍ୟହିଁ ତାଙ୍କର ଚିନ୍ତାର ସାମଗ୍ରୀ ଥିଲା । ବିନୁଆ ଆସି ତାଙ୍କୁ ବୀରେନ୍ଦ୍ରଙ୍କ ସଙ୍ଗେ କନକର ବିବାହ ସ୍ଥିର ହୋଇଥିବା କଥା କହିବା ବେଳୁ ସେ ଦିନ ରାତି ଭାବୀ ଦମ୍ପତିଙ୍କର ଭାବୀ ସୁଖ ଚିନ୍ତା କରୁଥାନ୍ତି । ଦୁହିଙ୍କୁ ପ୍ରେମର ଆସନରେ ବସାଇ ନିଜର ନିର୍ଜନ କାରାବାସରୁ ମନେ ମନେ ତାଙ୍କ ସୁଖ ଦେଖୁଥାନ୍ତି — କେତେବେଳେ ଈର୍ଷାରେ ପ୍ରାଣ ଜଳି ଯାଉଥାଏ, ଆଉ କେତେବେଳେ ଅଭିମାନରେ ଆଖିରୁ ଲୁହ ଗଡ଼ି ପଡ଼ୁଥାଏ, କେତେବେଳେ ବିନୁଆ ଆସି ବୀରେନ୍ଦ୍ର କନକଙ୍କ କଥା ତାଙ୍କ ଆଗେ ପକାଇଥିବା ହେତୁ ତା'ର ଦୋଷ ସାବ୍ୟସ୍ତ କରୁଥାନ୍ତି, ଆଉ କେତେବେଳେ ନିଜର ଦୁର୍ବଳତା ନିମନ୍ତେ ଥରକୁ ଥର ଆପଣାକୁ ଧିକ୍କାରୁଥାନ୍ତି । ଥରେ ଅଧେ ମନେ କରନ୍ତି, ଲେଖିବେ ବୀରେନ୍ଦ୍ର ପାଖକୁ, "ଭାଇ, ତୁ ଯେଉଁ ରତ୍ନ ଅବଲୀଳାକ୍ରମେ ହାତରେ ପାଇଛୁ ତା'ର ଅଭାବରେ ଆଉ ଜଣେ କେତେ ସହୁଛି ଜାଣିଲେ, ତାହା ଉପରେ ଅମୂଲ୍ୟ ବୃଝନ୍ତୁ ଏବଂ ବୁଝି, ହଜିଯିବା ଭୟରେ ତାକୁ ମୂହୂର୍ତ୍ତେ ହେଲେ ହୃଦୟର କାରାଗାରରୁ ମେଲକୁ ଛାଡ଼ନ୍ତୁ ନାହିଁ ।"

ସେହି ରତ୍ନର ଅଧିକାରୀ ଭାଗ୍ୟବାନ୍ ବୀରେନ୍ଦ୍ର ଏଠାକୁ କିପରି ଆସିଲା, ଏ ଅବସ୍ଥାରେ କିପରି ପଡ଼ିଲା ? ଗୋପାଳ ବିସ୍ମିତ

ହେଲେ । ମାତ୍ର ଏ ତ ବିପ୍ଲବର ସମୟ ନୁହେଁ । ବୀରେନ୍ଦ୍ର ସେ ଅଚେତନ ।

ଗୋପାଳ ଭଲୁ ଛୁଆଟାକୁ ଚଉତରାରେ ଖଣ୍ଡେ ଦଉଡ଼ିଦ୍ୱାରା ଗୋଟାଏ ଖୁଣ୍ଟାରେ ବାନ୍ଧିଦେଇ ବୀରେନ୍ଦ୍ରଙ୍କ ପାଖକୁ ଗଲେ ଏବଂ ତାଙ୍କ ନାକ ପାଖରେ ଧୀରେ ଧୀରେ ହାତ ରଖିଲେ । ନିଶ୍ୱାସ ଆସ୍ତେ ଆସ୍ତେ ଚାଲିଛି ।

ମୁହୂର୍ତ୍ତିକ ଭିତରେ ନିକଟରେ ଥିବା ତାଙ୍କର ପରିଚିତ ଗୋଟିଏ ଝରଣାରେ ନିଜର ପିନ୍ଧା ଲୁଗାରୁ ଖଣ୍ଡେ ଭିଜାଇ ଆଣି ଆସି ବୀରେନ୍ଦ୍ରଙ୍କ ମୁହଁରେ ରଖିଲେ । ବୀରେନ୍ଦ୍ରଙ୍କ ଚେତନା ଫେରି ଆସିବା ସାଙ୍ଗେ ସାଙ୍ଗେ ସେ ଭୟରେ "ବା—ଘ, ବା—ଆ—ଘ—ଅ" ବୋଲି ପାଟିକରି ଆଉ ଥରେ ଅଚେତନ ହୋଇଗଲେ । ଆଉ ଟିକିଏ ଗଲା, ବୀରେନ୍ଦ୍ର ଆଖି ଖୋଲି କିଛି ବୁଝି ନ ପାରି ଗୋପାଳଙ୍କ ଦାଢ଼ିଆ ମୁହଁକୁ ଉପରେ ଚାହିଁରହିଲେ ।

"କିଛି ଭୟ ନାହିଁ, ତୁମେ ବଞ୍ଚିଗଲ । ଦେହରେ କେଉଁ-ଠାରେ କିଛି କଷ୍ଟ ଜଣାଯାଉଛି ?"

"ଉ, ଭାରି କଷ୍ଟ—ମଣ୍ଡରେ କାହିଁ—ମଣ୍ଡର—ମଣ୍ଡର ?"

ଗୋପାଳ କିଛି ନ କହି ଖୁବ୍ ଧୀରେ ଧୀରେ ବୀରେନ୍ଦ୍ରଙ୍କୁ ଟେକି ଧରି ନିଜର ଘର ଆଡ଼କୁ ଗଲେ ଏବଂ ଘରେ ପହଞ୍ଚି ନିଜର ଖଟରେ ଲୁଗାପଟା ସବୁ ପକାଇ ଯେତେଦୂର ସମ୍ଭବ କୋମଳ ଶେଯଟିଏ କରି ତହିଁରେ ତାଙ୍କୁ ଶୁଆଇଲେ ।

ସମସ୍ତ କଷ୍ଟ ସତ୍ତ୍ୱେ ବୀରେନ୍ଦ୍ରଙ୍କର ବେଶ୍ ନିଦ ହେଲା । ଗୋପାଳ ବୁଝିଲେ, ଅବସ୍ଥା ଆଦୌ ଶୋଚନୀୟ ନୁହେଁ । ବିଶେଷ କିଛି ଆଘାତ ହୋଇଥିଲେ ଏତେ ସହଜରେ ନିଦ ହୁଅନ୍ତା ନାହିଁ ।

ତେବେ ଡାକ୍ତର ଦେଖାଇବାର କଥା । ଗୋପାଳଙ୍କର ନଜର ଏ ଭିତରେ ଯେତେ ରୋଗ ବୈରାଗ ହୋଇଛି, କୌଣସିଥିରେ କୌଣସି ଡାକ୍ତର ବା ଡାକ୍ତର ଔଷଧ ଦରକାର ହୋଇନାହିଁ । ପ୍ରକୃତି ତା'ର ବଚନ ଶକ୍ତିରେ ତାଙ୍କୁ ରୋଗମୁକ୍ତ କରିଛି । ପାଣି ତାଙ୍କର ଘା ସବୁ ପୂରେଇ ଦେଇଛି । କିନ୍ତୁ ଏ ତ ସେ ନୁହଁ । ଏ ତ ସହରର ଲୋକ । ଏମାଙ୍କ ଦେହକୁ ଡାକ୍ତର ନ ହେଲେ ନ ଚଳେ । ଡାକ୍ତର ଡାକିବାକୁ ହେବ ।

ବୀରେନ୍ଦ୍ର ବିଶ୍ୱାସଙ୍କର ଚେତନା ଲାଭ କଲାବେଳେ 'ମଠର— ମଠର' ବୋଲି କହିଥିବା ତାଙ୍କର ମନେପଡ଼ିଲା । ତା' ହେଲେ ମଠର ତ ନିଶ୍ଚୟ ନିକଟରେ ଥିବ । ମଠରରେ ଆଉ କିଏ ଆସିଛି ? ଯେ ଆସିଥାଉ, ସେ ନିଶ୍ଚୟ ବୀରେନ୍ଦ୍ରଙ୍କ ଲୋକ ହୋଇଥିବ । ସେଇଠାକୁ ଗଲେ ଡାକ୍ତର ଆଣିବାର ବ୍ୟବସ୍ଥା ନିଶ୍ଚୟ ଶୀଘ୍ର ହୋଇଯିବ ।

ଗୋପାଳ ମଠର ଖୋଜିବା ଉଦ୍ଦେଶ୍ୟରେ ସଡ଼କ ଆଡ଼କୁ ବାହାରିଲେ ; ମାତ୍ର ଠିକିଏ ଚାଲି ଦେଖିଲେ ତାଙ୍କ ଗୋଡ଼ ଆଉ ଚଳୁନାହିଁ । ମନେ ପଡ଼ିଗଲା ବନ୍ଧୁକ ଗୁଳି । ସେ ଆଶ୍ଚର୍ଯ୍ୟ ହେଲା ପରି ଗୋଡ଼କୁ ଚାହିଁ ଦେଖିଲେ ନଳିତୋଡ଼ରେ ବଳାଗଣ୍ଠିର ପ୍ରାୟ ଚାରିଆଙ୍ଗୁଳି ଉପରକୁ ଦୁଇଆଙ୍ଗୁଳି ହବ ଗୁଞ୍ଜି ହୋଇଯାଇଅଛି । ରକ୍ତ ବାହାରି ଏବଂ ବାହାରୁଥିବା ରକ୍ତ ଶୁଖିଯାଇ କପରି ଗୋଟେ କାଳିଆ ଦିଶୁଛି । କଣ କରିବେ ? ମଠରର ସନ୍ଧାନ ନ ନେଲେ ନ ଚଳେ ।

ପୋଖରୀ କୂଳକୁ ଯାଇ ସ୍ଥାନଟା ଭଲ କରି ଧୂଆ ଧୋଇ କରି ଖଣ୍ଡେ ପରିଷ୍କାର କନା ଗୋଡ଼ରେ ଗୁଡ଼େଇ ସେ ସଡ଼କ ଆଡ଼କୁ ଚାଲିଲେ ।

ବାଟରେ ଗୋଟିଏ ନାଳ ; ନାଳଟିରେ କେବଳ ବର୍ଷାଦିନେ ଛଲକଣ ମୁନ୍ଦିଏ ପାଣି ଗଲେ । ସେଦିନକୁ ପ୍ରାୟ ଶୁଖିଗଲଣି । ସେହି ଶୁଖିଲା ନାଳରୁ ବାହାରର ଆଉ କିଛି ଦେଖାଯାଏ ନାହିଁ । ନାଳର ଦୁଇ ପାଖେ ମାଳଭୂମି ଖୁବ୍ ଉଚ ହୋଇ ଉପରକୁ ଉଠିଛି । ଓ୍ୱପରୁ ନାଳ ମଧ୍ୟ ପରିଷ୍କାର ଦିଶେ ନାହିଁ—ତହିଁରେ ଥିବା ଗଛମାନଙ୍କ ଯୋଗୁଁ । ଗୋପାଳ ସେହି ନାଳ ପାର ହେଉଛନ୍ତି, ସଡ଼କ ଦିଗରୁ ଶୁଭିଲା କିଏ ଜଣେ କହୁଛି, "ମୁଁ ଆଉ ଆଗକୁ କେଉଁଠି ଯିବି ନାହିଁ । ଆରେ, ଯା ଭିତରେ ନିଶ୍ଚୟ ଭୂତ ଅଛି ବେ । ଘରବାବୁଙ୍କୁ ତ ଖାଇଛି, ଆମେ ଗଲେ ଆଉ ଫେରିବା ନାହିଁ ।"

ଆର ଜଣକ କହୁଛି, "ଆରେ ନାଇଁ ମ । ଭୂତ ଆସିବ କୁଆଡ଼ୁ ? ଗୁଲ ଯିବା, ଘରବାବୁ କୁଆଡ଼େ ଗଲେ, ଖୋଜିବା । ସେ କୁଠିଇ ପଡ଼ିଯାଇଥିବେ କି···"

ପୂର୍ବଜଣକ ଉତ୍ତର କଲା, "ଆଉ କି କଣ ? ଭୂତ ନ ଥିଲେ ତ ବାଘ ଖାଇଥିବ । ତୋର ମରିବାକୁ ମନ ଥିଲେ ତୁ' ଯା ।"

ଏ ଜଣକ ମଦନବାବୁଙ୍କ ମଟର ଡ୍ରାଇଭର । ମାଧୁଆ ସାଙ୍ଗରେ ଘରବାବୁଙ୍କୁ ଖୋଜିବାକୁ ଆସିଛି । ବୀରେନ୍ଦ୍ର ଦୁଇଘଣ୍ଟା ପର୍ଯ୍ୟନ୍ତ ନ ଫେରିବାରୁ ମଦନବାବୁ ଉତ୍କଣ୍ଠିତ ହୋଇ ଏ ଦୁହିଙ୍କୁ ପଠାଇଥିଲେ । ମଟର ଡ୍ରାଇଭର ବଚରା ମଟରରେ ବସିଥିଲା-ଯାକ ଇନ୍ଦ୍ରଚନ୍ଦ୍ରଙ୍କୁ ଭୟ କରେନାହିଁ ; ମାତ୍ର ମଟରରୁ ବାହାରେ ଥିଲେ ତା'ର ସମସ୍ତ ସାହସ କୁଆଡ଼େ ଗୁଲିଯାଏ । ଅନ୍ୟର ମଟର ସଙ୍ଗେ ଦୌଡ଼ କଲାବେଳେ, କଟେଇ ନିଜ ମଟରକୁ ଆଗକୁ ନେଲାବେଳେ, ତୁମେ ଯଦି ତାକୁ ଦେଖନ୍ତ, ମନେ କରନ୍ତ ତା'ର ପ୍ରାଣକୁ ଟିକିଏ ମାତ୍ର ଭୟ ନାହିଁ । ମାତ୍ର ଏ ତ ମଟର ନୁହେଁ । ମଟର ବାହାରେ

ଧକା ଖାଇଗଲେ ଗୋଟାଏ କଣ୍ଟୁ ଜଖମ୍ ହୋଇଯିବ କାମ୍ଧା ଖୁବ୍ ବେଶି ହେଲେ ଲୋକ ମରିଯିବ । ମାତ୍ର ଭୂତ ! ଭୂତଠାରୁ ତ ଆଉ ରକ୍ଷା ନାହିଁ । ପ୍ରାଣଟା, ଶୂନ୍ୟେ ଶୂନ୍ୟେ କୁଆଡ଼େ ଚାଲିଯିବ । ଭୂତ ଜାଅନ୍ତାରେ ମୋଡ଼ ମାଡ଼ ମଣିଷଟାକୁ ଖାଇଯିବ ।

ଏହାପରେ ଭୂତଭୟରେ ତ୍ରସ୍ତ ହୋଇ ଡ୍ରାଇଭର ମାଧିଆକୁ କହୁଛି, ଗୋପାଳଙ୍କ ମୁଣ୍ଡ ବଣ ବୁଦାଭିତରୁ ତାଙ୍କ ଆଡ଼କୁ ଧୀରେ ଧୀରେ ଆସୁଥିବାର ଦେଖିଲା । ଗୋପାଳ ମଧ୍ୟ ସେମାନଙ୍କୁ ଦେଖିପାରି କହିଲେ, "ଅରେ ରହ, ରହ । ମୁଁ ଯାଇ ପାରୁନାହିଁ ।"

ଏତକ ଶୁଣି ଡ୍ରାଇଭର୍‌ର ଭୟ ଦ୍ଵିଗୁଣିତ ହୋଇଗଲା । "ଯାବେ, ମାନୁ ନ ଥିଲୁ ପରା । ଶୁଣ୍ ଶୁଣ୍ କଏ ଡାକୁଚି । ସେ ଆସିପାରୁ ନାହିଁ । ପାଖକୁ ଯା ମୁଣ୍ଡକୁ ଦେଖାଇ ଦେବୁ । ଆରେ ମୋ ମା'ଲୋ ! ଉସ୍‌ମାନ୍‌ରେ ପ୍ରାଣୁଟା ଗଲା ଲୋ" ବୋଲି ଚିତ୍କାର କରି କରି ଡ୍ରାଇଭର ବାବୁ ମରିପଡ଼ି ସଡ଼କ ଆଡ଼କୁ ଧାଇଁଲେ ।

ଏ କାଣ୍ଡ ଦେଖି ମାଧିଆର ବି ପୂର୍ଣ୍ଣ ଭୟ ହେଲା । "ଆରେ, ପଳେଇଛୁ କୁଆଡ଼େ ରେ । ସେ ଭୂତ ନୁହେଁ ବେ" ବୋଲି ପାଟିକରି କରି ଡ୍ରାଇଭରକୁ ଗୋଡ଼େଇବା ବାହାନାରେ ତା ପଛରେ ଚମ୍ପଟ ଦେଲା ।

ଲୋକ ଦୁଇଟିଙ୍କ କାର୍ଯ୍ୟରେ ଗୋଡ଼ର ଯନ୍ତ୍ରଣା ଭୁଲିଯାଇ ଗୋପାଳ ମଠର ପାଖେ ଅସି ହସି ହସି ପଡ଼ିଥିଲା ବେଳକୁ ଡ୍ରାଇଭର ମଦନବାବୁଙ୍କ କହୁଛି, "ଆଜ୍ଞା, ଭୂତଟା କେଉଁଠେ ଚାଲିକି ଦେଖିଲେଣି ? କହୁଛି, ମୁଁ ଚାଲିପାରୁ ନାହିଁ, ମୋ ପାଖକୁ ଆସ । ଆମେ ତା ପାଖକୁ ଯାନ୍ତୁ ! ଯିମିତି ତା ମୁଣ୍ଡକୁ ମୁଁ ଦେଖିଛି ସିମିତି ଦେଲି ଚମ୍ପଟ୍ ।"

ସମସ୍ତଙ୍କ ଆଖି ଗୋପାଳଙ୍କ ଉପରେ ପଡ଼ିଲା । ପଳାତକ ଦ୍ଵ' ଜଣଯାକ ଲୋକଟା ପ୍ରକୃତ ଭୂତ ନୁହେଁ ବୋଲି ଟିକିଏ ଆଶ୍ଵସ୍ତ ହୋଇ ଠିଆ ହେଲେ । କନକ ନିଶଦାଢ଼ି ମଧ୍ୟରେ ସେ କିଏ ଚିହ୍ନିଲେ । ତାଙ୍କ ସ୍ମୃତି ଖାଲି ପଡ଼ିକା ଉଠିଲା । ମଦନବାବୁ ଚିହ୍ନି ନ ପାରି କହିଲେ, "ତୁମେ କିଏ ?"

ଗୋପାଳ ନିଜର ପରିଚୟ ସଙ୍ଗେ ସଙ୍ଗେ ସଂକ୍ଷେପରେ ବୀରେନ୍ଦ୍ରଙ୍କ ଅବସ୍ଥା ଜଣାଇଲେ ଏବଂ ଖୋର୍ଦ୍ଧାରୁ ଡାକ୍ତର ଆଣିଲେ ଭଲ ହୁଅନ୍ତା ବୋଲି ମତ ଦେଲେ । ସାଙ୍ଗେ ସାଙ୍ଗେ ମଦନବାବୁଙ୍କୁ ଧରି ମଟର ଖୋର୍ଦ୍ଧା ଆଡ଼କୁ ଦ୍ରୁତଗତିରେ ଚାଲିଲା ।

ମଦନବାବୁ ଗଲାପରେ ଗୋପାଳ କନକଙ୍କୁ ଚାହିଁଲେ—କନକ ଗୋପାଳଙ୍କୁ ଚାହିଁଲେ । ଦୁହିଁଙ୍କ ହୃଦୟରେ କଣ ଭାବ ହେଉଥାଏ, କିଏ କହିବ ? କିଛି ସମୟ ପର୍ଯ୍ୟନ୍ତ କାହା ମୁହଁରୁ କିଛି କଥା ବାହାରିଲା ନାହିଁ । ଶେଷରେ ଗୋପାଳ କହିଲେ, "ଆସନ୍ତୁ, ଆପଣଙ୍କ ବନ୍ଧୁଙ୍କ ପାଖକୁ ଯିବେ । ଖୁବ୍ ଅଳ୍ପ ବାଟ । ଗୋଟିଏ ରାସ୍ତା ପଡ଼ୁଛି ।"

କନକ କିଛି ନ କହି ପଛେ ପଛେ ଚାଲିଲେ । ଅଧେ ବାଟ ଆସି ସାରିଲେଣି, କନକ ପଚାରିଲେ, "ମାଷ୍ଟର ବାବୁ, ଆପଣ ଏଠାରେ ?"

ଗୋପାଳଙ୍କର ମନ ହେଲା ହୃଦୟର ରୁଦ୍ଧଦ୍ଵାର ଖୋଲିଦେବେ । ସେ ଏଠାରେ କାହିଁକି ଅଛନ୍ତି ପରିଷ୍କାରରୂପେ ବୁଝାଇଦେବେ । ପୁଣି ବିଚାରିଲେ, 'ଫଳ କଣ ? ନିଜର ଦୁର୍ବଳତା ପ୍ରକାଶ କରିବା ସାର ହେବ ସିନା ।' ସଂକ୍ଷେପରେ ଉତ୍ତର ଦେଲେ, "ହଁ, ଯାହାର

ଯେଉଁଠାରେ ସୁବିଧା, ସେ ସେଠାରେ ରହିବ । ସେଥିରେ କଣ ଅଛି ?"

କନକ ନିରାଶ ହେଲେ । ଏପରି ଉତ୍ତର ଦେଲେ ତ କଥା ମିଳିବ ନାହିଁ । ଆଉ ଖଣ୍ଡେ ବାଟ ଗଲ, ସେ ପଚାରିଲେ—କାହିଁକି ଛୋଟୋଉଛନ୍ତି ?

ଗୋପାଳ—ଆପଣଙ୍କ ସ୍ୱାମୀ ପଡ଼ିଗଲାବେଳେ ତାଙ୍କ ବନ୍ଧୁକର ଗୁଳିଟେ ମୋ ଗୋଡ଼ରେ ଘଷିହୋଇ ଚାଲିଗଲା । ବିଶେଷ କିଛି କ୍ଷତି ହୋଇନାହିଁ । ଆମେ ଜଙ୍ଗଲି ଲୋକ । ଆମର ଏଥିପାଇଁ ଶୋଚନା ନ ଥାଏ ।

ବୀରେନ୍ଦ୍ର ତାଙ୍କ ସ୍ୱାମୀ—ଏ ଖବରଟା ଦେଲା କିଏ ? ବୋଧହୁଏ ନିଜେ ବୀରେନ୍ଦ୍ର । ଗୋପାଳଙ୍କ କହିବା ଭଙ୍ଗୀରୁ ଜଣାଯାଉଥିଲା, ଅନ୍ୟ କେହି ତାଙ୍କର ସ୍ୱାମୀ ହେବ, ଏ କଥାଟା ତାଙ୍କୁ ଖରାପ ଲାଗୁଛି । ଖରାପ ପୁଣି ଲାଗୁଛି କାହିଁକି । କନକ ଗୋପାଳଙ୍କ ମୁହଁକୁ ଚାହିଁଲେ—ମୁହଁଟି ବିଷାଦରେ ଭରି ଯାଇଛି । କପାଳ ଉପରେ ଗୁଡ଼ାଏ କ୍ଷତ ଆଖିରେ ପଡ଼ିଲା । 'ଏଗୁଡ଼ାକ କଣ ?' କନକ ସମବେଦନାରେ ପଚାରିଲେ'।

"ଗୋଟିଏ ଭାଲୁ ସଙ୍ଗେ ଲଢ଼େଇ କରି ସେତକ ଅର୍ଜିଛି" ବୋଲି କହି ଗୋପାଳ କଥାଟାକୁ ଉଡ଼େଇବାର ଚେଷ୍ଟାକଲେ ।

"ଏଁ, ଭାଲୁ—ଭାଲୁ କଣ ଏ ଜଙ୍ଗଲରେ ଅଛନ୍ତି ?"

"ଜଙ୍ଗଲରେ କାହିଁକି ? ମୋ ସାଙ୍ଗେ ଏଇ ଘରେ ତ ଅଛନ୍ତି ?"

କନକ ସ୍ଥିତ ହେଲେ ।

"ଭୟ କରିବାର କିଛି କାରଣ ନାହିଁ । ଚାଲନ୍ତୁ ଯିବା । ମୋର ଗୋଟିଏ ଭାଲୁପିଲା ଜଙ୍ଗଲରେ ପଡ଼ିଛି । ତା' ପାଖରେ ଆପଣଙ୍କ ବନ୍ଧୁକ ମଧ ପଡ଼ିଛି । ତାକୁ ଆଣିବା । ମୋର ସେ କଥା ଏପର୍ଯ୍ୟନ୍ତ ମନେ ପଡ଼ୁନଥିଲା । ଆପଣ ମନେ ପକେଇଦେଲେ । ଧନ୍ୟବାଦ ।"

କେତେ ପାଖର ସେ, କେତେ ଦୂରର ଭଳିଆ କଥାବାର୍ତ୍ତା କରୁଥାନ୍ତି ! ଗୋପାଳଙ୍କ କଥାବାର୍ତ୍ତାର ଢଙ୍ଗ ତାଙ୍କୁ ଭଲ ଲାଗୁ ନଥାଏ ।

ଗୋପାଳ ଆଗେ ଆଗେ ଜଙ୍ଗଲ ଭିତରକୁ ବାହାରିଲେ । କନକ ପଛେ ପଛେ ଯାଉଥାନ୍ତି । ଗୋପାଳଙ୍କ ଦୃଢ଼ ପଦକ୍ଷେପ ତାଙ୍କୁ ଭାରି ଭଲ ଲାଗୁଥାଏ । ଜଙ୍ଗଲ ଭିତରେ ବାଘଭାଲୁଙ୍କ ସଙ୍ଗେ ଖେଳ କରୁଥାନ୍ତି—ଗୋପାଳ । ଆଉ ପୋଷା ଭାଲୁ ଛୁଆର ଖସ୍ ଖସ୍ ଶବ୍ଦରେ ଧୈର୍ଯ୍ୟଚ୍ୟୁତ ହୋଇ ଅଚେତନ ଅବସ୍ଥାରେ ପଡ଼ିଛନ୍ତି—ଖଗେନ୍ଦ୍ର । ଖଗେନ୍ଦ୍ର ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଆଉ ଗୋପାଳ ଅସ୍ତ୍ରଶସ୍ତ୍ରହୀନ ନିଜର ବଳରେ ବାହୁଦୁଇଟିକୁ ଏକମାତ୍ର ଅସ୍ତ୍ର କରିଛନ୍ତି ।

ଦୁହେଁ ଯାଇ ଘଟଣାସ୍ଥଳରେ ପହଞ୍ଚିଲେ । ଭାଲୁଛୁଆଟି ପ୍ରଭୁଙ୍କୁ ଦେଖି ଆନନ୍ଦ ପ୍ରକାଶ କଲା ଏବଂ ବୋଧହୁଏ ଭାଲୁ ଭାଷାରେ ଓ ସଙ୍କେତରେ ତାକୁ ତା' ଭାଇଠାରୁ ଦୂରରେ ରଖିଥିବା ହେତୁ ଅଭିଯୋଗ କଲା । ଗୋପାଳ ଭାଲୁଛୁଆଟିକୁ କୋଳରେ ଧରି ବନ୍ଧୁକଟିକୁ କୁଟାଖଣ୍ଡେ ଭଳିଆ ତଳୁ ଗୋଟାଇ ଫେରିବାକୁ ଉଦ୍ୟତ ହେଲେ ।

ଏ ଦୃଶ୍ୟରେ କନକ ମୁଗ୍ଧ ହୋଇ ପଚାରିଲେ, "ସେ କାମୁଡ଼ିବ ନାହିଁ ? ମୁଁ ଟିକିଏ ଧରନ୍ତି ।"

"କେଜାଣି, ନା, ବୋଧହୁଏ କାମୁଡ଼ିବ ନାହିଁ—ନିଅନ୍ତୁ ।"

କନକଙ୍କ ହାତରେ ଗୋପାଳଙ୍କ ହାତ ବାଜିଲା । ସେ ସ୍ପର୍ଶରେ କି ବୈଦ୍ୟୁତିକ ଶକ୍ତି ! କନକଙ୍କ ମନରୁ ସମସ୍ତ ଶଙ୍କା ଦୂର ହୋଇଗଲା । ଗୋପାଳଙ୍କ ହୃଦୟ ମଧ୍ୟ ଟିକିଏ ହାଲୁକା ହୋଇଗଲା । ସେହି ସ୍ପର୍ଶସୁଖ ଅନୁଭବ କରି କରି ସେ ଘରକୁ ଫେରିଲେ ।

ମାତ୍ର ଘରେ ପଶିବା ମାତ୍ରେ ଦୁହିଙ୍କ ମଧ୍ୟରେ କେତେ ବଡ଼ ପ୍ରାଚୀର, ଉଭୟେ ବୁଝିଲେ । କନକ ତାଙ୍କୁ ପ୍ରତ୍ୟାଖ୍ୟାନ କରି ଅନ୍ୟକୁ ବରଣ କରିଛନ୍ତି । ସେହି 'ଅନ୍ୟ' ବର୍ତ୍ତମାନ ରୋଗଶଯ୍ୟାରେ ଶାୟିତ । ଗୋପାଳ ନିଜେ ଦୋଷକରିଥିବାର ବୁଝି କହିଲେ, "ଆପଣଙ୍କ ପ୍ରିୟତମଙ୍କ ସଙ୍ଗେ ଆପଣଙ୍କୁ ଛାଡ଼ି ନ ଦେଇ ମୁଁ ଏଣେ ତେଣେ ଆପଣଙ୍କୁ ବୁଲାଉଛି – ପୂର୍ବ ସ୍ମୃତି ସ୍ମରଣରେ କ୍ଷମା ଦେବେ । ସେ ଯେ ପୀଡ଼ିତ, ଯାଆନ୍ତୁ ତାଙ୍କର ପରିଚର୍ଯ୍ୟା କରିବେ ।"

କନକ ମନେ ମନେ କହିଲେ, "ମୁଁ ତ ମୋ ପ୍ରିୟତମ ସଙ୍ଗେ ବୁଲୁଥିଲି, ତମର ଦୋଷ କଣ ?" କିନ୍ତୁ ପ୍ରକାଶ୍ୟରେ କିଛି ନ କହି ଗୋଟିଏ ଦୀର୍ଘନିଶ୍ୱାସ ପକାଇ ବୀରେନ୍ଦ୍ରଙ୍କ ଖଟ ପାଖରେ ଚଉକିଟିରେ ବସି ଚଉକି ଉପରେ ନଖରେ ଗାରେଇବାକୁ ଲାଗିଲେ ।

ବୀରେନ୍ଦ୍ର ଘୋର ନିଦ୍ରାରେ ଅଭିଭୂତ ହୋଇଥାନ୍ତି ।

ଡାକ୍ତର ଆସିଲେ । ଯନ୍ତ୍ର ସାହାଯ୍ୟରେ ପରୀକ୍ଷା କରି ଦେଖିଲେ, ଛାତିରେ ବନ୍ଧୁକର ଗୋବାଟା ବାଜି ଛାତି ଟିକିଏ ଜଖମ

ହୋଇଛି ; ମାସ ରକ୍ତବାନ୍ତ ନ ହୋଇଥିବାରୁ ବିଶେଷ କିଛି ଆଶଙ୍କା ନାହିଁ ।

ମଦନବାବୁ—ଆଚ୍ଛା, ବର୍ତ୍ତମାନ ରୋଗୀକୁ ମଠରେ କିଛି ନେଇଗଲେ କ୍ଷତି ନାହିଁ ତ ?

ଡାକ୍ତର—ନା, କିଛି ବିଶେଷ କ୍ଷତି ନାହିଁ । ତେବେ ଏଠାରୁ ମଠର ପର୍ଯ୍ୟନ୍ତ କିପରି ସେ ଯିବେ, ସେହି କଥା ପଡ଼ୁଛି । ଖଣ୍ଡେ ଷ୍ଟ୍ରେଚର୍ ଥିଲେ ବଡ଼ ଭଲ ହୋଇଥାନ୍ତା ।

ଗୋପାଳ—କିଛି ପ୍ରୟୋଜନ ନାହିଁ । ମୁଁ ତାଙ୍କୁ ପଡ଼ିଯାଇଥିବା ଜାଗାରୁ ଏଠାକୁ ଯେପରି ଆଣିଥିଲି, ସେହିପରି ନେଇଯିବି ।

ସେଇ କଥା ହେଲା । ହାତ ଯୋଡ଼ିକ ଆଗକୁ ପ୍ରସାରିତ ହୋଇ ଗୋଟିଏ ଆରାମ ଚଉକି ଭଳିଆ ହେଲା ଏବଂ ତହିଁରେ ବୀରେନ୍ଦ୍ରଙ୍କୁ ଅବଲୀଳାକ୍ରମେ ଧରି ଗୋପାଳ ଆଗେ ଆଗେ ବାଟ କଢ଼ାଇ ଚାଲିଲେ ।

ବୀରେନ୍ଦ୍ର ମଠରଭିତରେ ଆରାମରେ ଶୋଇଲେ । ମଠର ଚାଲିବାର ସମସ୍ତ ଆୟୋଜନ ହୋଇଗଲା । ଡାକ୍ତର ବାବୁ ଗୋପାଳଙ୍କ ସଙ୍ଗେ କଥାବାର୍ତ୍ତା ହୋଇ ସାରି ଶେଷରେ କହିଲେ, "ଯାହା ହେଉ ଆପଣଙ୍କ ଭଳି ଯୋଗ୍ୟ ଲୋକ ଜୀବନଟା ବାଘଭାଲୁ ସଙ୍ଗେ କଟେଇଦେବା ମତେ ଭଲ ଲାଗୁ ନାହିଁ ।"

ଗୋପାଳ କିଛି ଉତ୍ତର ନ ଦେଇ ହସି ହସି ଡାକ୍ତରଙ୍କଠାରୁ ବିଦାୟ ନେଲେ ।

ମଦନବାବୁ ପାଞ୍ଚଟଙ୍କାର ନୋଟ୍‌ଖଣ୍ଡେ ଗୋପାଳଙ୍କ ଆଡ଼କୁ ବଢ଼ାଇ କହିଲେ, "ଗୋପାଳବାବୁ, ମୁଁ ଆପଣଙ୍କ ପ୍ରତି ଯେଉଁ ବ୍ୟବ-

ହାର କରିଥିଲି, ତାହା କର୍ତ୍ତବ୍ୟ ଅନୁରୋଧରେ କରିଥିଲି । ମନରେ ଧରିବେ ନାହିଁ । ଆଜି ଆପଣ ନ ଥିଲେ ବୀରେନ୍ଦ୍ରଙ୍କର ଜୀବନସଂଶୟ ହୋଇଥାନ୍ତା ଏବଂ ମୋର ଏକମାତ୍ର କନ୍ୟାର ହୃଦୟ ଭାଙ୍ଗି ଯାଇଥାନ୍ତା । ଏ ପୁରସ୍କାର ଗ୍ରହଣ କରନ୍ତୁ ।"

ଗୋପାଳ ଉଦ୍‌ବେଳ ଭାବରାଶିକୁ ଯଥେଷ୍ଟ ସଂଯତ କରି କହିଲେ, "ମୋର କାର୍ଯ୍ୟଦ୍ୱାରା ଯଦି ଜଣେ ବନ୍ଧୁର ପ୍ରାଣରକ୍ଷା ହୋଇଅଛି ଏବଂ ଆପଣଙ୍କ କନ୍ୟାଙ୍କର ସୁଖ ବଢ଼ିଛି, ତାହାହେଲେ ତାହାହିଁ ମୋର ଯଥେଷ୍ଟ ପ୍ରତିଦାନ । ମୁଁ ପୁରସ୍କାର ପ୍ରତ୍ୟାଶାରେ କିଛି କରିନଥିଲି । ଯେ ପୁରସ୍କାର ଲାଭ ପାଇଁ ଆପଣଙ୍କର ଉପକାର କରିବ, ତା ନିମନ୍ତେ ଟଙ୍କାଟା ଗଚ୍ଛିତ କରି ରଖନ୍ତୁ ।"

ମଟର ଛାଡ଼ିଦେଲା । ଗୋପାଳ ନିଜ ବାସସ୍ଥାନକୁ ଫେରିଲେ । ବାପାଙ୍କ କାର୍ଯ୍ୟରେ କନକଙ୍କ ଆଖିରୁ ଲୁହ ବାଧା ନ ମାନି ଅଜସ୍ର ଗଡ଼ି ଯାଉଥାଏ ।

## ଅଠର

ପନ୍ଦର ଦିନ ହୋଇଗଲାଣି । ମଦନବାବୁ ପୁଣି ତାଙ୍କ ଚିର ଅଭ୍ୟସ୍ତ କଠିନଜୀବନ ଯାପନ କରିବାକୁ ଆରମ୍ଭ କଲେଣି । ତାଙ୍କର ସେହି ପୂର୍ବ ପରିଚିତ ଆରାମ ଚଉକି ହୁକା ବୈଠିକିକୁ ପାଖରେ ରଖି ମଦନବାବୁଙ୍କ କୃଷ୍ଣ ଦୀର୍ଘକାୟ ବପୁ ଧାରଣ କରି ବୈଠକଖାନାରେ ଶୋଭା ପାଇଲାଣି । ମଦନବାବୁଙ୍କ ପାଟିରେ ବୈଠକଖାନାର ଛାତ ପ୍ରତିଧ୍ୱନିତ ହେଲାଣି । ମଝିରେ ତାଙ୍କ ମାମୁଲି ଜୀବନରେ ଗୋଟିଏ କିଛି ପରିବର୍ତ୍ତନ ଘଟିଥିଲା ବୋଲି ସେ, ଗୁଜର ବାଜର, ଘରଦ୍ୱାର, ସମସ୍ତେ ପାସୋରି ସାରିଲେଣି ।

ମାତ୍ର କନକ ପାସୋରି ପାରୁ ନାହାନ୍ତି । ଜଗଲର ସେହି ପ୍ରେମସନ୍ନ୍ୟାସୀଟି ତାଙ୍କ ଆଖି ଆଗରେ ସବୁବେଳେ ଉଭା ହୋଇ ରହିଛନ୍ତି । ତାଙ୍କ ମୁଣ୍ଡରେ ଭାଲୁ ନଖ-ଘା'ଗୁଡ଼ିକ ତାଙ୍କର ନିଜ ଯୋଗୁଁ ହୋଇଛି ବୋଲି ସେ ସବୁବେଳେ ନିଜକୁ ଧିକାରୁଛନ୍ତି । ତାଙ୍କ ପ୍ରତି ସେ କେତେ ଅନ୍ୟାୟ କରିଛନ୍ତି ବୁଝିପାରି ହୃଦୟକୁ ଚିନ୍ତାରେ ପୋଡ଼ି ପକାଉଛନ୍ତି । ତୁହି ପରେ ଜଗୁଆ ମା ଅଣାହୋଇ ତାଙ୍କର ଗୃହକର୍ତ୍ତ୍ରୀ ରୂପେ ନିଯୁକ୍ତ ହେଲାଦିନୁ ସେ ଭଲରୂପେ ହୃଦୟଙ୍ଗମ କରିଛନ୍ତି—ପ୍ରିୟତମ ମାଷ୍ଟର ବାବୁ, ତାଙ୍କରି ନିଜ ଆଦେଶରେ ତାଙ୍କୁ ତ୍ୟାଗକରି ଏବଂ ସେଥି ସଙ୍ଗେ ସଙ୍ଗେ ନିଜର ସମସ୍ତ ଭବିଷ୍ୟତ୍ ଜୀବନକୁ ନିଆଁ ଦେଇ, ଲୋକଚକ୍ଷୁର ଅନ୍ତରାଳରେ, ନିରାଶା ନିଆଁରେ ପୋଡ଼ିହୋଇ ମରିବା ନିମନ୍ତେ ଜଙ୍ଗଲ ଆଶ୍ରୟ କରିନ୍ତି ! ତାଙ୍କ ପ୍ରେମ କେଡ଼େ ପ୍ରଚୁର—ହାୟ ! ତାକୁ କେତେ ଅଳ୍ପ ବୋଲି ସେ ବିଗୁରିଥିଲେ । ସେ ବିଗୁରିଥିଲେ, ଗୋପାଳ ତାଙ୍କୁ ଅବଜ୍ଞାରେ ଛାଡ଼ି ଗ୍ଲଲି ଯାଇଛନ୍ତି । ସେ ନିଜକୁ ଉପେକ୍ଷିତା ବୋଲି ମନେ କରିଥିଲେ, କିନ୍ତୁ ପ୍ରକୃତରେ କିଏ ? ସେ ତ ଅନ୍ୟ ପତି ଗ୍ରହଣ କରିବାକୁ ପ୍ରସ୍ତୁତ ! ଉପେକ୍ଷିତ ପ୍ରାଣପ୍ରିୟ ତ ତାଙ୍କରି ଉପେକ୍ଷାରେ ମର୍ମାହତ ହୋଇ ସମୁଦାୟ ମାନବ-ଜାତିକୁ ତ୍ୟାଗ କରିଛନ୍ତି !

ଜଗୁଆ ମା ନିଜର ବ୍ୟବହାରଦ୍ୱାରା କନକଙ୍କର ବଡ଼ ପ୍ରିୟ ହୋଇଛି । କନକଙ୍କର ସେ ଗୃହକର୍ତ୍ତ୍ରୀ, କନକଙ୍କର ସେ ମା । ବିଶେଷତଃ ଏତିକ ମା'ଙ୍କ ଆଗରେ ଯାହା ସବୁ କୁହାଯାଇ ପାରନ୍ତା ନାହିଁ, ତାହା ସମସ୍ତ ଜଗୁଆ ମା ଆଗରେ କହିବାରେ ବିଶେଷ ସଙ୍କୋଚ ବା ଲଜ୍ଜା ହେଉନାହିଁ । ଜଗୁଆ ମାର ସହାନୁଭୂତି-ସ୍ୱଚ୍ଛ ହୃଦୟରେ ତାଙ୍କ ନିଜ ହୃଦୟ ପ୍ରତିବିମ୍ବିତ ହୋଇଅଛି । ଜଗୁଆ ମା

ବୁଝିଛୁ, କାହା ଯୋଗୁଁ ଏ ଜଅଁଳ ଫୁଲଟି କଅଁଳି ମଉଳି ପଡ଼ୁଛି । ସେ ବୁଝିଛି, ଏ ବ୍ୟାପାରର ସମାଧାନ କେତେ ସହଜ, କେତେ କଷ୍ଟ ।

ସେ ଦେଖୁଛି କେତେ ବେଗେ କନକଲତାର ଦେହ-ଲତାଟି ଶୁଖି ଯାଉଛି ! ଭାବୁଛି, ସେ ନିଜେ ଯଦି ତାର ମା ହୋଇଥାନ୍ତା ଏକଥା ଶୁଣି ତୁନି ହୋଇ ରହନ୍ତା କିପରି ? କନକର ନିଜ ମା ଥିଲେ ତ ମଦନ ବାବୁଙ୍କ ରାଗକୁ ଡରିଯାଇ ତୁନିହୋଇ ରହନ୍ତା ନାହିଁ ! ଜଗୁଆ ମା ମନକୁମନ କହୁଛି, "ମୁଁ ପରା ଏବେ ତାର ମା' ହେଲି । ମୋର ତେବେ ଏତେ ଡର କାହିଁକି ? ଝିଅପାଇଁ ଘର ବରକ୍ତର ସମ୍ମୁଖୀନ ହେବାକୁ ଏତେ ସଙ୍କୋଚ କାହିଁକି ?"

ବୁଢ଼ୀ ଏହିପରି ଭାବୁଛି, ଭାନୁଆ ଆସି ତା ହାତରେ ତୁନି କରି ଖଣ୍ଡିଏ କାଗଜ ଦେଇ କହିଲା, "ମାଉସୀ, ଗୋଟାଏ ଝୁଲୁର୍‌ମୁଣ୍ଡି ମାଇକିନିଆ ଆସି ମତେ ଏ ଚିଠିଖଣ୍ଡି ଦେଇଗଲା । କହିଲା, 'ଚିଠି ପଢ଼ିସାରି ଦିଦି ତା' ସାଙ୍ଗେ ଦେଖା କରିବାକୁ ମନକଲେ ଆଜି ରାତି ଦି' ଘଡ଼ିଠାରେ ସେ କାଠଯୋଡ଼ି କୂଳରେ ଦେଖାକରିବ ।"

ବୁଢ଼ୀ—ସେ ଇଲେ କୁଆଡ଼େ ଗଲା ?

ଭାନୁଆ—କେଜାଣି ? ଚିଠିଖଣ୍ଡ ମୋ ହାତରେ ଦେଇ ତୁନି ତୁନି ମତେ ଏତକ କହି କୁଆଡ଼େ ପଳେଇଲା ।

କନକ ଚିଠିଖଣ୍ଡି ପଢ଼ିଲେ—

ପ୍ରିୟ ଭଉଣୀ,

ମୁଁ ତୁମ ନାଁ ଜାଣେ, ତୁମକୁ ଭଲକରି ଚିହ୍ନେ ; ମୁଁ କିଏ

ତୁମେ ମଧ ଜାଣ । ତେବେ ବର୍ତ୍ତମାନ ସବଚପ୍ତ ଦେଇ ତୁମ ସ୍ମୃତିକୁ କଳଙ୍କିତ କରିବା ମୋର ମନ ହେଉ ନାହିଁ । ତୁମେ ମୋତେ ଭଲ ବୋଲି ଜାଣ, ହଠାତ୍ ମୋ'ର କଳଙ୍କର ଇତିହାସ ତୁମ ଆଗେ ଖୋଲି ଦେବାକୁ ସାହସ ହେଉନାହିଁ । ଯଦି ମୋ' ବିଷୟରେ ବିଶେଷ କିଛି ଜାଣିବାର ଇଚ୍ଛା ହୁଏ, ତେବେ ଆଜ ରାତି ଦୁଇ-ଘଡ଼ିଠାରେ ମୋ' ସଙ୍ଗେ ଦେଖା ହେବ ।

ଭଉଣୀ, ମୁଁ ତୁମର ବିବାହ ପ୍ରସ୍ତାବ ଶୁଣି ଏ ଚିଠିଖଣ୍ଡି ଲେଖୁଛି । ତୁମେ ଯାହାକୁ ବିବାହ କରିବ ସ୍ଥିର କରିଛ, ତାଙ୍କୁ ମୁଁ ବି ବରଣ କରିଥିଲି । ସେ ମୋତେ ଅନେକ ଆଶା, ପ୍ରଲୋଭନ ଦେଖାଇଥିଲେ । ମୋ'ର ଅବସ୍ଥା ଭଲ ନ ଥିଲି, ତୁମେ ଜାଣ । ତୁମ୍ଭମାନଙ୍କୁ ଏବଂ ଆମ ସ୍କୁଲର ଅନ୍ୟ ସଙ୍ଗିନୀମାନଙ୍କୁ ଦେଖି ସୁଖ ସମୃଦ୍ଧି ପାଇଁ, ପଇସା ପଦର ସ୍ୱଚ୍ଛଳତା ପାଇଁ, ବିଳାସ ପାଇଁ ମୋ ହୃଦୟରେ ଗୋଟାଏ କଠିନ ପିପାସା ଜାତ ହୋଇଥିଲି । ସେ ତାଙ୍କ ବହୁମୂଲ୍ୟ ଉପହାରମାନଙ୍କଦ୍ୱାରା ମୋତେ ଜଣାଇଦେଲେ, ତାଙ୍କରି-ଦ୍ୱାରା ମୋର ପିପାସା ଶାନ୍ତ ହେବ । ମୁଁ ତାଙ୍କ ପ୍ରତି ଆକୃଷ୍ଟ ହେଲି ।

ସେ ଯାହାହେଉ, ମୁଁ ବର୍ତ୍ତମାନ ତାଙ୍କର ଆଶ୍ରିତା—ପତ୍ନୀ ନୁହେ । ତୁମେ ତାଙ୍କର ପତ୍ନୀ ହୋଇ ରହିବ, ସେଥିରେ ମୋ'ର ଆଦୌ ଦୁଃଖ ନାହିଁ । ତେବେ ମୋ'ର ଏତିକ ଅନୁରୋଧ, ସେ ଯାହା କହୁଛନ୍ତି, ଯେପରି ଭାବରେ ପ୍ରେମ କରୁଛନ୍ତି, ତୁମକୁ ହାତମୁଠାରେ ପାଇଲାମାତ୍ରେ ସେ ଭାବ ବଦଳିଯିବ । ତୁମ ହୃଦୟ-ପଞ୍ଜୁରୀରୁ ସେ ଉଡ଼ି ଅନ୍ୟତ୍ର ଗୁଞ୍ଜିରିବେ । ମୁଁ ଆଗରୁ ଏକଥା ଜଣାଇ ଦେଉଛି—ସେତେବେଳେ ତୁମ ମନରେ ଆଘାତ ନ

ଲାଗିବ ବୋଲି, ନିଜର ପବିତ୍ର ପ୍ରେମ ଅପାତ୍ରରେ ଦେଇଦେଲି ବୋଲି ସେତେବେଳେ ଯେପରି ଅନୁତାପରେ ଦଗ୍ଧ ନ ହୁଅ ।

ଅବଶ୍ୟ, ମୋ ଅବସ୍ଥା ତୁମର ହେବ ନାହିଁ । ମୋର ଅଭିଭାବକ ଥିଲେ, ଅନ୍ତତଃ ବିବାହ ବେଦୀରେ ତାଙ୍କ ସଙ୍ଗେ ବସିଥାନ୍ତି । ସେ ଏକାନ୍ତରେ ମୋତେ ଯେ ପ୍ରତିଜ୍ଞା କରିଥିଲେ ଅନ୍ତତଃ ସେହି ପ୍ରତିଜ୍ଞା ସମସ୍ତଙ୍କ ଆଗରେ ଈଶ୍ୱରଙ୍କୁ ସାକ୍ଷୀ କରି ଆଉ ଥରେ ଶୁଣାଇଥାନ୍ତେ । + + + । ଆଉ ସେଗୁଡ଼ାକ କହି କିଛି ଲାଭ ନାହିଁ । ବର୍ତ୍ତମାନ ଆଉ ବିଶେଷ କିଛି କହିପାରୁ-ନାହିଁ । ଅତ୍ୟାଗ୍ରହ ଓ ଭୟରେ ମୁଁ ପାଗଳ ହୋଇଗଲାଣି । ମୋ' କଥା ତୁମେ ଭଲକରି ବୁଝି ପାରୁଥିବ କି ନାହିଁ କେଜାଣି । ଦେଖା ହେଲେ ସବୁକଥା କହିବି । ତୁମର

ଅପରିଚିତା ଭଉଣୀ

କନକ ଚିଠିଖଣ୍ଡି ପଢ଼ିଲେ । ଜଗୁଆ ମା'କୁ ଆଉ ଥରେ ପଢ଼ି ଶୁଣାଇଲେ । ବୀରେନ୍ଦ୍ରଙ୍କଠାରୁ କନକଙ୍କର ମନ ବର୍ତ୍ତମାନ ବହୁ ଦୂରରେ ଥିଲା । ଏ ଚିଠିଖଣ୍ଡି ପଢ଼ିସାରି ଆହୁରି ଦୂରତର ହୋଇଗଲା । କିନ୍ତୁ ଏ ଚିଠି ତାଙ୍କର କି କ୍ଷତି ବୃଦ୍ଧି କରିପାରିବ ? ଚିଠିରେ ଯାହା ଲେଖା ଅଛି ସବୁ ସତ୍ୟ ହେଉ, ଭୟ କିଣ ? ସେ ଯେଉଁ ତ୍ୟାଗ କରିବାକୁ ବାହାରିଛନ୍ତି ସେ ତ୍ୟାଗର ଗୁରୁତ୍ୱ, ଏ ଚିଠିକଥା ସତ୍ୟ ହେଲେ ଟିକିଏ ବଢ଼ିଯିବ ମାତ୍ର ।

ପତ୍ର ଲେଖିଛି କିଏ ? ପରିଚିତ ବୋଲି କହୁଛି, ଶେଷରେ ପୁଣି ଲେଖିଛି 'ଅପରିଚିତା ଭଉଣୀ' । ସେ କିଏ ? କେଡ଼େ ଦୁଃଖିନୀ ସିଏ ! କେତେ ଦୁଃଖ ଧରି ବୁଲୁଛି ? ଅପରିଚିତା ଆଡ଼କୁ ତାଙ୍କ ହୃଦୟ ଆକୃଷ୍ଟ ହେଲା ଏବଂ ସଙ୍ଗେ ସଙ୍ଗେ ବୀରେନ୍ଦ୍ରଙ୍କଠାରୁ ମୁକ୍ତ

ପାଇବାପାଇଁ ଅଜଣାରେ ଟିକିଏ ମନ ହେଲା । ବାପାଙ୍କ କଥାରେ ମୂଣ୍ଡ ପୋତି ଦେବାପାଇଁ ସେ ଆଗରୁ ସଂକଳ୍ପ କରିଥିଲେ । ବର୍ତ୍ତମାନ ହୃଦୟ ଭିତରେ ଯେପରିକି କେହି ଅତି ଅସ୍ପଷ୍ଟ ଭାଷାରେ ବାପାଙ୍କ ବିରୁଦ୍ଧରେ ବିଦ୍ରୋହ କରିବାପାଇଁ ଟିକିଏ ସଙ୍କେତ ଦେଲା । କିନ୍ତୁ କନକ ଏ ଉପଦେଶ ଶୁଣି ନ ଶୁଣିଲା ପରି ପୂର୍ବ ସଂକଳ୍ପରେ ଦୃଢ଼ ରହିବାକୁ ଚେଷ୍ଟା କଲେ ।

ଜଗୁଆ ମା ଚିଠିଟି ଶୁଣି ଆଶାରେ ଉତ୍ଫୁଲ୍ଲ ହେଲା । ସେ ମନେ ମନେ ଆଗରୁ ସ୍ଥିର କରିଥିଲା, ମଦନବାବୁଙ୍କୁ ପାଇ ସବୁ କଥା କହିବ । ବର୍ତ୍ତମାନ ସେ ଇଚ୍ଛା ଆହୁରି ବଳବତୀ ହେଲା । ସେ ଚିଠିଖଣ୍ଡି ଧରି ବାହାରିଲା, ମଦନ ବାବୁଙ୍କ ପାଖକୁ । ପୁଣି କଣ ବିସ୍ମର କହିଲା—ଆଚ୍ଛା, ଥାଉ, ଆଗ ତା'ସଙ୍ଗେ ଦେଖା ହେଉ, ତା'ପରେ ଯାହା ହେବ । (କନକଙ୍କ ଉଦ୍ଦେଶ୍ୟରେ) ମା, ତମେ ନନ୍ଦିକୂଳକୁ ଯିବା କଥା ହେବ ନାହିଁ । ମୁଁ ଯାଉଛି ।

\+ \+ \+

ରାତି ଦଘଡ଼ି ହେବ । ବାବୁମାନେ ହାଓଆ ଖାଇ ଖାଇ ଘରକୁ ଫେରି ଗଲେଣି । କାଠଯୋଡ଼ି କୂଳ ସଡ଼କ ଇଲେକ୍‌ଟ୍ରିକ୍ ଲ୍ୟାମ୍ପ-ଗୁଡ଼ାକ ଯେଉଁ ପର୍ଯ୍ୟନ୍ତ ନିଜର ଆଲୋକ ବିଞ୍ଚି ପାରୁଛନ୍ତି, ସେ ଖଣ୍ଡ ଖୁବ୍ ଆଲୋକିତ କରୁଛନ୍ତି । ଯେଉଁଠାରେ ତାଙ୍କ ଆଲୋକର ଗତି ବନ୍ଦ ହୋଇଛି, ସେଗୁଡ଼ାକୁ ଅଧିକ ଅନ୍ଧାର କରି ପକେଇଛନ୍ତି । ଜଗୁଆ ମା ଏହି ଅନ୍ଧାର ଭିତରକୁ ତନ୍ନ ତନ୍ନ କରି ଖୋଜି ଇତସ୍ତତଃ ବୁଲୁଛି—କାହିଁ ଚିଠି ଦେଇଥିବା ଅପରିଚିତା ସ୍ତ୍ରୀଲୋକଟି ? ହଠାତ୍ ଗୋଟିଏ ଗଛମୂଳେ ଜଣେ କିଏ ଦିଶିଲା । ଜଗୁଆ ମା ତା'ରି ଆଡ଼କୁ ବାହାରିଲା । ଗଛମୂଳର ଧଳାଲୁଗା-

ପିନ୍ଧା ସ୍ତ୍ରୀଲୋକଟି ଆଉ ୨୦ ହାତ ଦୂରରେ। ହଠାତ୍ କେଜାଣି କୁଆଡ଼ୁ ଦୁଇଜଣ ଲୋକ ଧାଇଁ ଆସି ତାଙ୍କୁ ଧରି ପକେଇଲେ ଏବଂ ଅସ୍ପଷ୍ଟ ସ୍ୱରରେ ଦୁଇ ଗୋଟିଏ ପଦ କଥାବାର୍ତ୍ତା କରି ଗୋଟାଏ ଶିଶିରେ ବଜେଇଲେ। ଶିଶିର ବାଜିବା ସାଙ୍ଗେ ସାଙ୍ଗେ ଗୋଟଏ ମଟର ଗାଡ଼ି ଆସି ପହଞ୍ଚିଗଲା । ସ୍ତ୍ରୀଲୋକଟି ଏବଂ ତା'ର ଦୁଇ ବନ୍ଧକର୍ତ୍ତା ମଟରରେ ବସି କୁଆଡ଼େ ଗ୍ଭଲିଗଲେ । ଜଗୁଆ ମା ଚିତ୍ରପ୍ରତିମା ପରି ଏସବୁ ଦେଖି ଘରକୁ ଫେରିଲା । ସେ ଉପୁକରିବା ସ୍ତ୍ରୀଲୋକ ନୁହେଁ, କିନ୍ତୁ ଘଟଣାସ୍ରୋତ ଏତେ କ୍ଷିପ୍ରବେଗରେ ଗ୍ଭଲିଗଲା ଯେ, ବାଧା ଦେବାପାଇଁ ତାକୁ ସମୟ ମିଳିଲା ନାହିଁ । କିଏ ବା ସେ ବାଧା ଦେଇଥାନ୍ତା ! ବସ୍ତୁପ୍ଥରୁ ମନକୁ ମୁକ୍ତ କରୁ କରୁ ମଟରର ଘୁ ଘୁ ଶବ୍ଦ କୁଆଡ଼େ ଦୂରରେ ଲୀନ ହୋଇଗଲା ।

ଜଗୁଆ ମା ନନ୍ଦକୂଳରୁ ଫେରି କନକଙ୍କୁ ସବୁ କଥା କହିଲା । କନକ ହସିଦେଇ ଉତ୍ତର କଲେ, "ତୋ'ର ସବୁପ୍ରକାର ସନ୍ଦେହ । କେହି ଜଣେ ସାଙ୍ଗରେ ସ୍ତ୍ରୀକୁ ଧରି ବୁଲି ଆସିଥିଲେ, ବୁଲି ସାରି ମଟରରେ ଗଲେ । ତତେ ଜଣାଗଲା, କିଏ ଯୋଡ଼େ ମାଇପିଟାକୁ ଧରି ପକେଇଲେ । ଯେବେ ଯେ କଟକ । କଟକରେ ଇମିତି କଥା ଘଟିବା ଅସମ୍ଭବ ।"

ଜଗୁଆ ମା କନକଙ୍କ କଥାରେ କୌଣସି ଆପତ୍ତି ନ କରି କହିଲା, "କେଜାଣି ବାବୁ, ହୋଇଥିବ । ମୋ ମନ ଏକା ମାନୁ ନାହିଁ । ସେ ସବୁ ବୁଲିଯିବା ଲୋକ ନୁହଁ । ସେ ଯାହାହେଉ ଆମର କିଣ ଅଛି । ମୁଁ ଯାଉଛି ବାବୁଙ୍କ ପାଖକୁ ।"

କନକ ବାବୁଙ୍କ ପାଖକୁ ଯିବା କଥାଟାକୁ ନାପସନ୍ଦ କରି ବାବୁଙ୍କ ପାଖକୁ ଯିବାର କୌଣସି କାରଣ ନାହିଁ ବୋଲି ବହୁତ

କହିଲେ । ମାତ୍ର ଜଗୁଆ ମା କଣ ଶୁଣିବା ମଣିଷ ? ସେ କନକଙ୍କ କଥାର କୌଣସି ଯୁକ୍ତିଯୁକ୍ତ କାରଣ ନ ଦେଖି ବାବୁଙ୍କ ପାଖକୁ ବାହାରିଲା ।

ନିଯୁକ୍ତ ହବନଠାରୁ ବୁଢ଼ୀ ସଙ୍ଗେ ଥରେ ହେଲେ ବାବୁଙ୍କର କଥାବାର୍ତ୍ତା ହୋଇନଥିଲା । ଆଜି ବିନା ଡାକରାରେ ବୁଢ଼ୀ ତାଙ୍କ ପାଖକୁ କି ପ୍ରୟୋଜନରେ ଆସିଛି ବୁଝି ନପାରି ଟିକିଏ ଆଶ୍ଚର୍ଯ୍ୟରେ ଖବର-କାଗଜରୁ ମୁହଁ ବାହାର କରି ପଚାରିଲେ, "କଣ କହୁଛୁ ଲୋ ବୁଢ଼ୀ ?"

ଜଗୁଆ ମା ସ୍ୱାଭାବିକ ଲଜ୍ଜାରେ ଟିକିଏ ସଙ୍କୁଚିତ ହୋଇ କହିଲା, "ଆଉ କିଛି ନୁହେଁ ଯେ ବାବୁ, ଝିଅକଥା ଟିକିଏ ବୁଝୁନାହଁ ?"

ଗୃହକର୍ତ୍ତ୍ରୀଙ୍କ ଏଭଳି ଘରମଣିଷ ପରି କଥାବାର୍ତ୍ତା ହେବାର ଦେଖି ମଦନବାବୁ ବିରକ୍ତ ହୋଇ କହିଲେ, "କାହାକଥା ବୁଝିଲି ନାହିଁ ବୋଲି କହୁଛୁ, ବୁଢ଼ୀ—ମୋ ଝିଅ କଥା ? କଣ ହୋଇଛି ତାର ' ଡାକ୍ତର ତ ଆସୁଛି, କଣ ହୋଇଛି ଡାକ୍ତର ଅଗେ କହୁନାହିଁ ।ହଉ ଯା, ମୁଁ ଯାଇ ଦେଖିବି ।"

"ତମେ କଣ ଦେଖିବ, ବାବୁ । ତମେ କଣ ଜାଣିବ ? ସେ କଥା ଯେ ଜାଣନ୍ତେ ସେ ନାହାନ୍ତି । ମୁଁ ତମଠାରୁ ବେଶୀ ଜାଣିଛି । ମୋଠାରୁ ଶୁଣ—"

ସ୍ତ୍ରୀ କଥା ମନେ ପଡ଼ିଯିବାରୁ ମଦନବାବୁ ଆସ୍ତେ ଆସ୍ତେ ଗୋଟିଏ ଦୀର୍ଘ ନିଶ୍ୱାସ ଛାଡ଼ିଲେ । ବଞ୍ଚିଥିବା ବେଳେ ତାଙ୍କର ସ୍ତ୍ରୀ ସଙ୍ଗେ ଭଲ ହୋଇ ପଦେ କଥାବାର୍ତ୍ତା ନଥିଲା । ଆଜି ତା'ର ସ୍ମୃତିଟା

କେଡ଼େ ମଧୁର ଜଣା ଯାଉଛି । ବୁଢ଼ାଙ୍କ ହୃଦୟ ଟିକିଏ ନରମ ହୋଇଗଲା । ସେ କହିଲେ, "କଣ ତୁ ଜାଣୁ, ବୁଢ଼ୀ, କହିଲୁ ।"

ଜଗୁଆ ମା ସଜୋରରେ ସମସ୍ତ ସଙ୍କୋଚ ଏଡ଼ି ଦେଇ ଆରମ୍ଭ କଲା—"ବାବୁ, ଇମିତିକା ବିଷୟରେ ହେବ ଭାରି କଡ଼ା, ନ ହେଲେ ଭାରି ନରମ । ଆମେ ବାଧା ଦେଲେ ପୁଅଝିଅଙ୍କୁ ଆଦୌ ପସନ୍ଦ ନାହିଁ । ଅଜଣା ଅଚିହ୍ନା ପୁଅଝିଅ ଯୋଡ଼ିଏ ଅନ୍ୟଦ୍ୱାରା ଠଣା ହୋଇ ଆସି ଏକ ହୁଅନ୍ତି ଏବଂ ଏକାଠି ରହି ରହି ପରସ୍ପରକୁ ପରସ୍ପର ପ୍ରେମ କରିବାକୁ ଶିଖନ୍ତି । ଯେ ପୁଅଝିଅ ତାଙ୍କ ମନ ଇଚ୍ଛାରେ ବଡ଼ ବଡ଼ ହୁଅନ୍ତି, ତାଙ୍କ ମନ ଇଚ୍ଛାରେ ବାହାହେବା ଉଚିତ । ତମେ କାହିଁକି ତାଙ୍କ ଇଚ୍ଛାରେ ବାଧା ଦେଉଛ ? ଟିକିଏ ଛାଡ଼ିଦେଇ ଟିକିଏ ଅଟକେଇ ଦେଲେ ଫଳ ଭାରି ଖରାପ ହୁଏ ବାବୁ !"

ମଦନ ବାବୁ ଭାରି ବିରକ୍ତ ହୋଇ କହିଲେ, "କଣ କହୁଛୁ, ପରିଷ୍କାର କରି କହୁ ନାହୁଁ, ବକ୍ତୃତା କାହିଁକି ଦେଉଛୁ ? ତୋ'ଠାରୁ ବକ୍ତୃତା ଶୁଣିବାକୁ ମୋର ବେଳ ନାହିଁ ।"

"ପରିଷ୍କାର କରି କଣ କହିବି, ବାବୁ ! ତମେ ତ ସବୁ ବୁଝୁଛ । ତମ ଝିଅ ବୃହଡ଼ବର୍ଷ ହେଲା ଯାହାକୁ ବର ବୋଲି ମାନୁଛି, ତାର ସଙ୍ଗେ ତାକୁ ବାହା ଦିଅ । ଗୋପାଳ ବାବୁ ଆମ କନକକୁ ଭାରି ସୁଖ ଦେବ । ସେ ତାକୁ ଭାରି ସୁଖପାଏ । ଦେଖିଲ ନାହିଁ, କନକ ନାହିଁ କରିଦେଲା ବୋଲି, ଗାଁ ନାହିଁ, ଟଣ୍ଡା ନାହିଁ, ଜଗୁଟିଆ ବଣଭିତରେ କେତେ କଷ୍ଟ ପାଉଛି ?"

ମଦନବାବୁ ରାଗରେ ଗର୍ଜିଉଠି କହିଲେ, "ଏ ବୁଢ଼ି ! ମୋ ଝିଅକୁ ମୁଁ କୁ'ଠେଇ ବାହାଦେବି ସେ କଥା ମୋତେ ଲାଗେ । ତୋ

ମୁଣ୍ଡ କାହିଁକି ଘୂରେଉଚ ? ଗ୍ରେଟଲୋକ—ଆପଣା କାମ ଆପେ କର ଦରମା ପୁଞ୍ଜାକ ହାତ କରିବାକୁଆଡ଼େ ଗଲ, କେତେ ମୂର୍ଖପଣ ବାହାର କରୁଛୁ ?”

ଜଗୁଆ ମା—ଗାଳି ଦିଅ ପଛେ, ମୁଁ ଯାହା କହୁଛି ସିମିତି କର, ପିଲଟିର ମନ ମାରିଦିଅ ନାହିଁ । ବାବୁ, ଗୋପାଳ ବାବୁର ପଇସା ନାହିଁ ବୋଲି କହୁଛ । ନ ଥାଉ । ମନ ମାନିବା ଜାଗାରେ ପଇସା କଣ କରିବ ? ଗୋପାଳ ବାବୁର ପଇସା ନାହିଁ ବୋଲି କଣ ତମ ଝିଅ ଦୁଃଖ ପାଇବ ? ତମକୁ ଈଶ୍ୱର ଯାହା ଦେଇଛନ୍ତି ସେଥିରେ ପେଟରଟି ଘର ସୁଖରେ ଚଳିବ, ଟଙ୍କା ପଇସା କଣ ହେବ ବାବୁ ?”

ମଦନ ବାବୁଙ୍କ ରାଗ ଚୂଟି ପର୍ଯ୍ୟନ୍ତ ଉଠିଗଲା । ସେ ଉଠିପଡ଼ି ହାତରେ ବାହାରି ଯିବାର ବାଟ ଦେଖାଇ କହିଲେ, “ଚୁପ୍ ବୁଢ଼ି, ମୋ ଘରେ ରହି ମୋତେ ରଗେଇବାକୁ ମାସକୁ ମାସ ଦରମା ମୂଠା କରୁଛୁ ପରା ? ଯା, ଇଲେ ଯା । ମୁଁ ଜାଣେ ପରା, ସଫସଲିଆ ମାଇକିନିଆଗୁଡ଼ାକ ଆମ କାମକୁ ପାଇବେ ନାହିଁ !”

ଜଗୁଆ ମା—ମୁଁ କାହିଁକି ଯିବି ମ ? ମୋ ଝିଅ ଯୁ'ଠେଇ ମୁଁ ସିଠେଇ । ତମେ କିଏ ମୋତେ ବାହାର କରିବାକୁ ? ମୁଁ ଦରମା ଲୋଭରେ ତମ ଘରକୁ ଆସି ନାହିଁ ଯେ 'ଦରମା' 'ଦରମା' ଉଦ୍ଧୋଉଚ ?

“ଆଉ କଣ ଆସିଛୁ ମତେ ରଗେଇ ପାଗଳ କରିବାକୁ ? ଯା, ଯା, ନ ଗଲେ ପୁଲିସ ଆସି ଇଲେ ଟାଣିଆ ଦେଇ ତଡ଼ିବ । ବୁଢ଼ୀଟାର ଗୁମର ଦେଖ । ଗୁଳକରାଣୀଟାଏ ! କେଡ଼େ ଆପଣାର ଲୋକପରି କଥାବାର୍ତ୍ତା କରୁଛୁ ?”

ଜଗୁଆ ମା—ଗାଳିଦିଅ, କେତେ ଗାଳିଦେବ । ଡାକ କାହାକୁ ଡାକିବ । ତମ ପୁଲିସ ଫୁଲିସ ମୁଁ ଜାଣେ ନାହିଁ । ପୁଲିସ ମୋର କଣ କରିବେ ? ମୋ ଝିଅପାଖେ ମୁଁ ରହିବ । ଦେଖିବା ଭଲ କିଏ ଛଡ଼େଇବ ?

ବୁଢ଼ୀ ଉଠି ଚାଲିଯାଉଥିଲା, ହଠାତ୍ ଦୁଆର ପାଖ କେଂଗର ମୁଠାରୁ ଚିଠି ଖଣ୍ଡିକ ମଦନବାବୁଙ୍କ ଆଗକୁ ଫିଙ୍ଗିଦେଇ ଟିକିଏ କଠୋର ଭାବରେ କହିଲା, "ଯେଉଁ ଜାରବାବୁଙ୍କ ସଙ୍ଗେ ଝିଅକୁ ବାହାଦେବ ବୋଲି ଏପରି ବାଇବଳୁ ହୋଇଛନ୍ତି, ସେ କିପରି ଲୋକ ଜାଣ ? ଏହି ଚିଠିରେ ତାଙ୍କ ଗୁଣ ବର୍ଣ୍ଣନା ଅଛି ।"

ବୁଢ଼ୀ ଏତକ କହି ତମ ତମ ହୋଇ ବାହାରକୁ ଚାଲିଗଲା । ସତେ ଅବା ଘରର ମଣିଷ ଟାଏ ! ଅଭିମାନରେ ଚାଲି ଯାଉଛି । ମଦନବାବୁ ତା' ଭାବ ଭଙ୍ଗୀ ଦେଖି ଭାରି ଚିଡ଼ିଗଲେ । ଯନ୍ତ୍ରଚାଳିତ ଭଳି ହୁକାନଳଟା ପାଟିକୁ ନେଲେ ; କିନ୍ତୁ ଧୂଆଁ ଆଉ ବାହାରିଲା ନାହିଁ । ମନ ଖୁବ୍ ଚଞ୍ଚଳ ଥିଲା । ପାଟି ସହାନୁଭୂତିରେ ଧୂଆଁ ଟାଣିବା କାମଟା ବନ୍ଦ କରିଦେଲା । ଏ କଣ ? କୁଆଡୁ ଆଇଲା ଏ ବୁଢ଼ୀଟା ? ଚାରିଦିନ ଭିତରେ କନକ ହୋଇଗଲା ତା' ଝିଅ ? ଆଉ ସେ ନିଜେ ? ଘରର ମାଲିକ ହୋଇ ସୁଦ୍ଧା କିଛି ନୁହନ୍ତି ! ସେ ନିଜଘରେ ଏପରି ଅପ୍ରଧାନ ଏପରି କୁଚା ହୋଇଗଲେଣି ଯେ ବୁଢ଼ୀଟେ ତାଙ୍କ ମୁହଁ ଉପରେ ନିର୍ଭୟରେ କଥା ବଢେଇ ଦେଇ ଯାଉଛି ।

"ଏ ବୁଢ଼ୀଟା କିଏ ? କନକପାଇଁ ତା ମୁଣ୍ଡ ଏତେ ବଥଉଛି କାହିଁକି ? କନକପାଇଁ ସେ ଏତେ ଗାଳି ନିର୍ବିକାର ମନରେ ସହି ଯାଉଛି ବା କିପରି ? ଏ ତ ନିଃସ୍ୱାର୍ଥ ପ୍ରେମ ନୁହେଁ । ନିଶ୍ଚୟ

ଭିତରେ ରହସ୍ୟ ଅଛି । ଧୂର୍ତ୍ତ ଗୋପାଳର ଏ ଫାନ୍ଦ । ମୋ ସମ୍ପତ୍ତିଟା ପାଇଗଲେ ବୁଢ଼ୀକି କିଛି ଗୋଟାଏ ଭାଗ ଦେବ ବୋଲି ସେ ନିଶ୍ଚୟ ଚକ୍ରାନ୍ତକରି ଏ ଫିକର ଲଗେଇଛି । ହୁଁ, ମତେ ଠକେଇ ଦେବ ! ମୋ ନା ମଦନବାବୁ, ମତେ ଠକି ଦେବା ଏଡ଼େ ସହଜ ହେବ-ନାହିଁ, ପୁଅ ।" ଯେ କୌଣସିମତେ ସାରେନ୍ଦ୍ର ସଙ୍ଗେ ସ୍ଥିର ବିବାହ ଦେଇ ସେ ଗୋପାଳକୁ ଗୋଟାଏ ଶିକ୍ଷାଦେବେ । ମଦନ ବାବୁ ଦୃଢ଼ସଂକଳ୍ପବ୍ୟଞ୍ଜକ ଗୋଟାଏ ଗମ୍ଭୀର ନିଶ୍ୱାସ ଛାଡ଼ିଲେ ।

ଦୃଷ୍ଟି ପଡ଼ିଗଲା ବୁଢ଼ୀ ପକେଇ ଦେଇ ଯାଇଥିବା କାଗଜ ଖଣ୍ଡିକ ଉପରେ । ମଦନବାବୁ ସେ ଖଣ୍ଡ ଉଠାଇ ଆଣି, କଷ୍ଟେ ମଷ୍ଟେ ଚଷମା ସାହାଯ୍ୟରେ ପଢ଼ିଗଲେ । ଏ କାଣ ବୃଦ୍ଧ ଏ ରହସ୍ୟ ବୁଝି ପାରିଲେ ନାହିଁ ।

ପାଟିକରି ଡାକଦେଲେ—"ମାଧିଆ, ସାର ବାବୁଙ୍କୁ ଡାକି ଆଣି ତ ?"

## ଊଣେଇଶ

ସାରେନ୍ଦ୍ର ତାଙ୍କ ଘରର ଗୋଟିଏ ନିଭୃତ କୋଠରିରେ ବସିଛନ୍ତି । ପାଖରେ ଆଉ ଜଣେ କିଏ ବସିଛି । ସାରେନ୍ଦ୍ର ଖୁବ ଚିନ୍ତିତ ହୋଇ କହୁଛନ୍ତି—"କଥାଟା ଠିକିଏ ବିଗିଡ଼ି ଗଲା । ଆଗରୁ ସେ ମାଇକିନିଆଟାକୁ ପଗାଡ଼ଦେଇ ପାରିଲ ନାହିଁ ? ତମେ ସବୁ କିଛି କାମର ନୁହଁ । ଆଉ କିଛିଦିନ ତାକୁ ଜଗି ଦେଇଥିଲେ ସବୁ ଯାଇଥାନ୍ତା ।" ଲୋକଟି ଠିକିଏ ବିରକ୍ତ ହେଲା ଭଳିଆ ସ୍ୱରରେ ଉତ୍ତରଦେଲା—ଆପଣଙ୍କର ତ ସବୁବେଳେ ସେହି କଥା, ବାବୁ ! ଦୁଇ ବରଷ କାଳ ଦିନରାତି ତାକୁ ଜଗି ରଖିଲି, ଦିନେ

କପଟ ଖସିଗଲା ଯେ, ଆମେ ହେଲୁ ଅକାମିକା ଲୋକ ! ଏନଗଣ୍ଡ ଖଟିବୁ, ପୁରସ୍କାର କାହିଁ ଗଲା—ଖାଲି ଗାଳି ଶୁଣିବା ସାର ! ହଁ, ଆମ କପାଳ, ନ ହେଲେ କଣ ଆମେ ଏଠାରେ ଆସି ପଡ଼ିଥାନ୍ତୁ ?

ସୁରେନ୍ଦ୍ର ଦେଖିଲେ ବିରକ୍ତ ହେଲେ ନିଜର କ୍ଷତି । ଲୋକଟି ରାଗିହୋଇ ଗୁଡ଼ ଗଲେ ସର୍ବନାଶ । ଖୁବ୍ ମଧୁର ସ୍ୱରରେ କହିଲେ—"ରାଗିଗଲ କି, ସଦାନନ୍ଦ ! ମୁଁ ମନଦୁଃଖରେ କହୁଥିଲି ସିନା । ଏଥର ମାଇକିନିଆଟା ଖସି ନ ଥିଲେ କିଛି ଗୋଳମାଳ ହୋଇନଥାନ୍ତା । ହାତଗଣ୍ଠି ପଡ଼ିସାରିଲା ମାନେ ସେ ଯାଇ ଯେତେ ଯାହା କରିଥିଲେ, କାହାର କଣ ହେଉଥିଲା ? କନକ ପାଖକୁ ଚିଠି ଖଣ୍ଡେ ଦେଇଛି ବୋଲି ପରା କହୁଛ ? ସେହି ଚିଠି-ଖଣ୍ଡକ ବଡ଼ ଅଡ଼ୁଆ କରିବ ।"

ସଦାନନ୍ଦ—କଣ ବେଶୀ ସିମିତି କିଛି ଅସୁବିଧା ହେବ ? ବାବୁ ଜାଣିଲେ ଟିକିଏ ଗୋଳମାଳ ହୋଇପାରେ ।

ସୁରେନ୍ଦ୍ର—କିଛି ଗୋଳମାଳ ନାହିଁ । ବାବୁଙ୍କୁ ଠିକ୍ ବୁଝେଇଦେବି । ତାଙ୍କୁ ମନେଇବାର ଉପାୟ ମୁଁ ଜାଣେ । (ପୁଣି ଟିକିଏ ଚିନ୍ତିତ ହୋଇ) ଉଃ, ବୁଢ଼ାଟା ବାଟକୁ ଆସିବ କି ନାହିଁ କେଜାଣି ? ସେ ବଦମାସ୍ ମାଇକିନିଆଟାକୁ ଠିକ୍ କରିଦେବାକୁ ହେବ । ସେ ଇଲେ କୁଆଡ଼ି ?

ସଦାନନ୍ଦ—(ହସି ହସି) ଯୁଁଠି ସିଁଠେ, ଆପଣ ତାଙ୍କୁ ବୁଝେଇ ସୁଝେଇ ତା'ଠାରୁ କଥା ଆଦାୟ କରି ଆଣିଲେ ବେଳୁ, ସେ ଯୁଁଠି ସିମିତି ପଡ଼ିଥିଲା, ସିମିତି ପଡ଼ିଛି । ତା ଗୋଡ଼ହାତ ସବୁ ବାନ୍ଧି ଦେଇଛି ।

ବୁଝିଲେ ସୁଝିଲେ ବୋଲି ସଦାନନ୍ଦ ଯେଉଁ କାର୍ଯ୍ୟ କଥା ଉଲ୍ଲେଖ କଲା ସେ କଥା ମନେ ପଡ଼ିବାରୁ ଯାଦବେନ୍ଦ୍ର ଟିକିଏ ହସିଲେ—"ହଁ, ହଁ, ଖୁବ୍ ବୁଝିଲେଇବାକୁ ପଡ଼ିଲା। କିନ୍ତୁ ଯୁବ କଣ ? ସେ ତ ହାତେ ହାତେ ଅର୍ଜିଲା !"

ଯାଦବେନ୍ଦ୍ର ପଚାରିଲେ, "ଆଚ୍ଛା, ତା'ର କ'ଣ ବେଶୀ ସେପରି କିଛି ଜଖମ ହୋଇଛି ? ଆଶଙ୍କା ତ କିଛି ନାହିଁ ?"

ସଦାନନ୍ଦ—ତା'ର ପୁଣି ଆଶଙ୍କା କ'ଣ ? ଏକା ଗ୍ରାହାକେ ଧନେ ଲାଗି ପିଟିଥିଲେ ତା'ର କିଛି ହେବ ନାହିଁ । ମାଡ଼ ସହି ନ ପାରୁଥିଲେ, ସେ ଏପରି ଆମ ଦାନାରେ ଧୂଳି ପକେଇବାକୁ ବସନ୍ତା ?

ଯାଦବେନ୍ଦ୍ର କଣ କହିବାକୁ ଯାଉଥିଲେ । ଦାଣ୍ଡଦୁଆରେ ଶବ୍ଦ ହେଲା, ମଦନବାବୁ ଯୁକର ଡାକୁଛି ।

ସଦାନନ୍ଦ ପଚାରିଲେ – "ବାବୁ, କିଏ ଡାକୁଛି ?"

ଯାଦବେନ୍ଦ୍ର—ମଦନବାବୁ ।

ସଦାନନ୍ଦ ତୁନି ତୁନି କହିଲା—"ବାବୁ, ସେଇକଥା ଉଠିଲାଣି ପରା ?"

ଗୋପାଳ – ଅଛା, ହଉ ଉଠୁ । ଦେଖାଯିବ । ଫେରିଲେ ଶୁଣିବ, ତମ ବାବୁ କମିତି ଲୋକ ।

ଯାଦବେନ୍ଦ୍ର ମଦନବାବୁଙ୍କ ଗମ୍ଭୀର ମୂର୍ତ୍ତି ଦେଖି ମୁହୂର୍ତ୍ତକେ ଜାଣିଗଲେ, ମଦନବାବୁଙ୍କ ହାତରେ ସେ ଶଠି ପଡ଼ିଛି । ମୁହୂର୍ତ୍ତକେ ସେ ଆତ୍ମରକ୍ଷା କରିବା ପାଇଁ ପ୍ରସ୍ତୁତ ହୋଇ ଯାଇ, ନିତାନ୍ତ ନ

ଜାଣିଲି ପରି କହିଲେ, ମୁଁ ଠିକ୍ ଏଇଥିପାଇଁ ଆପଣଙ୍କ ପାଖକୁ ଆସୁଥିଲି ।

ମଦନବାବୁ ଗମ୍ଭୀର ଭାବରେ 'ହୁଁ' ବୋଲି କହିଲେ । ଏ 'ହୁଁ' ଶୁଣି ବୀରେନ୍ଦ୍ର ଆହୁରି ସତର୍କ ହେଲେ ।

ମଦନବାବୁ କହିଲେ—"ତମକୁ ଖଣ୍ଡେ ଚିଠି ଦେଖାଇବାକୁ ମୁଁ ଡକେଇଲି ।"

ବୀରେନ୍ଦ୍ର ନିର୍ବାହ କୌତୂହଳରେ ପଚାରିଲେ—"କି ଚିଠି ?"

ମଦନବାବୁ ଚିଠି ଖଣ୍ଡି ବୀରେନ୍ଦ୍ରଙ୍କ ହାତକୁ ବଢ଼ାଇ ଦେଲେ । ବୀରେନ୍ଦ୍ର ପଢ଼ିଲେ । ମଦନବାବୁ ନିର୍ନିମେଷ ଦୃଷ୍ଟିରେ ତାଙ୍କ ମୁହଁକୁ ଚାହିଁ ଥାଆନ୍ତି । ମଦନବାବୁଙ୍କର ଚିରକାଳ ଅହଂକାର, ଲୋକର ମୁହଁକୁ ଦେଖି ସେ ହୃଦୟର ଅତି ଗୁପ୍ତ ପ୍ରକ୍ରିୟାସବୁ ଜାଣି ପାରନ୍ତି । ଏ କ୍ଷେତ୍ରରେ ସେ ବୀରେନ୍ଦ୍ରଙ୍କ ମୁହଁକୁ ପର୍ଯ୍ୟବେକ୍ଷଣ କରି ସ୍ଥିର ଜାଣିଲେ, ଚିଠିଟା ମିଛରେ ବୀରେନ୍ଦ୍ରଙ୍କ ମୁଣ୍ଡରେ ଦୋଷ ଲଦିବା ପାଇଁ ଜାଲ ହୋଇଛି ।

ବୀରେନ୍ଦ୍ର ଚିଠି ପଢ଼ି ସାରିଲେ । ମଦନବାବୁ ପଚାରିଲେ— "କଣ ଦେଖିଲ ?"

ବୀରେନ୍ଦ୍ର—ଏ କଥା ତ ମୁଁ ଆଗରୁ ଜାଣିଥିଲି । ମୁଁ ଏଥିପୂର୍ବରୁ ଗୋଟିଏ ଘଟଣାରୁ ଅନୁମାନ କରୁଥିଲି—ମୋର ଏ ସୌଭାଗ୍ୟରେ କେହି ଈର୍ଷା କରି ଷଡ଼ଯନ୍ତ୍ର କରୁଛି । ସେ ଅନୁମାନ ସତ୍ୟ ବୋଲି ବର୍ତ୍ତମାନ ଚିଠି ପଢ଼ି ବୁଝୁଛି ।

ଠିକ୍ କଥା । ମଦନ ବାବୁଙ୍କର ନିଜେ ଯେଉଁ ସନ୍ଦେହ ହୋଇଥିଲି, ବୀରେନ୍ଦ୍ରଙ୍କର ବି ସେହି ସନ୍ଦେହ । ନିଶ୍ଚୟ ଷଡ଼ଯନ୍ତ୍ର ଚାଲିଛି । ମଦନବାବୁ ଏ ଷଡ଼ଯନ୍ତ୍ରକୁ ବ୍ୟର୍ଥ କରିବା ନିମନ୍ତେ

ମନେ ମନେ ସଂକଳ୍ପକୁ ଦୃଢ଼, ଦୃଢ଼ତର କଲେ । ବୀରେନ୍ଦ୍ର ବିଚରା ପ୍ରତି ମଦନବାବୁଙ୍କର ସହାନୁଭୂତି ହେଲା ।

ମଦନବାବୁଙ୍କର କଅଁରି ସନ୍ଦେହ ହୋଇଥିଲା, ସେ କହିଲେ। ବୀରେନ୍ଦ୍ର ବି ସୁଚତୁର ଭାବରେ ଗଢ଼ା ଗଢ଼ି କରି ପାଞ୍ଚ କଥା କହିଲେ । ସବୁକଥା ପରିଷ୍କାର ଜଣା ପଡ଼ିଗଲା । ମଦନବାବୁ ବୀରେନ୍ଦ୍ରଙ୍କ ମନରୁ ସମସ୍ତ ଆଶଙ୍କା ଦୂର କରିବା ପାଇଁ କହିଲେ—“ବାବା, ଏ ସବୁଥିରେ ବିଚଳିତ ହେବନାହିଁ । ଯନ୍ତ୍ରଯନ୍ତ୍ର ବା ଫେରକାମି କରି ମୋତେ କେହି ଠକେଇ ଦେଇ ପାରିବେ ନାହିଁ । ଭୟର କୌଣସି କାରଣ ନାହିଁ ।”

ତା’ ପରେ ଅ.ହୁରି କେତେ କଥା ପଡ଼ିଲା । ବିବାହ ପରେ ଗୃହକର-ଦମନ-ସଭାର ଉନ୍ନତି ନିମନ୍ତେ କି କି କାର୍ଯ୍ୟ ପନ୍ଥା ଅବଲମ୍ବନ କରିବାକୁ ହେବ, ସାବ୍ୟସ୍ତ ହେଲା । ବୀରେନ୍ଦ୍ର ନିଶ୍ଚିନ୍ତ ମନରେ ଘରକୁ ଫେରିଲେ । ମଦନବାବୁଙ୍କ ମୁଣ୍ଡରୁ ମଧ୍ୟ ରଚିପଡ଼ି ହଠାତ୍ ଉଦୟ ହୋଇଥିବା ସନ୍ଦେହ ଦୂରହେଲା ।

## କୋଡ଼ିଏ

ସେ ଦିନ ସନ୍ଧ୍ୟାବେଳେ କନକଙ୍କୁ ବିଦାୟ ଦେଲାବେଳୁ ଗୋପାଳଙ୍କ ମନରେ ଆଉ ଶାନ୍ତି ନାହିଁ । ଏଥି ପୂର୍ବରୁ ଠିକ୍ ଶାନ୍ତି ଥିଲା ବୋଲି ଅବଶ୍ୟ ବୁଝାଯାଇ ପାରିବ ନାହିଁ । ତେବେ ଶାନ୍ତି ପାଇବା ନିମନ୍ତେ ସେ ଯଥେଷ୍ଟ ଚେଷ୍ଟା କରୁଥିଲେ । ଶାନ୍ତି ପାଇବେ ବୋଲି ଘର ଦ୍ୱାର ଛାଡ଼ି ଜଙ୍ଗଲ ଆଶ୍ରୟ କରିଥିଲେ । ଶାନ୍ତି ପାଇବେ ବୋଲି ବନ୍ୟଜନ୍ତୁଙ୍କ ଭିତରେ—କାହିଁକି ସାଙ୍ଗରେ—ରହିଥିଲେ, ମାତ୍ର ଫଳ କଣ ହେଲା ? ଜଙ୍ଗଲ ତ ତାଙ୍କୁ

ସଂସାର କୋଳାହଳରୁ ଦୂରରେ ରଖି ପାରିଲା ନାହିଁ । ବନ୍ୟ-ଜନ୍ତୁ ତ ତାଙ୍କୁ କିଛି ସାହାଯ୍ୟ କଲେ ନାହିଁ, ବରଂ ଏହି ବନ୍ୟଜନ୍ତୁ-ମାନେହିଁ, ସେ ଯାହାଙ୍କଠାରୁ ଦୂରରେ ରହିବାକୁ ବିଶେଷ ବ୍ୟସ୍ତ, ତାଙ୍କୁ ଆଣି ଜୁଟାଇବାର ଯୋଗାଡ଼ କଲେ ।

ଭାଲୁଛୁଆମାନଙ୍କ ପ୍ରତି ବିରକ୍ତି ଆସିଲା । ସେ ବିଚାରିଲେ, ସେମାନଙ୍କୁ ଛାଡ଼ିଦେବେ । ଛାଡ଼ିଦେବା ଉଦ୍ଦେଶ୍ୟରେ ତାଙ୍କୁ ନେଇ ନିଜ ବାହାର ଦୁଆରର ବାହାରେ ରଖି ଆସିଲେ ; ମାତ୍ର ଛୁଆ ଦୁଇଟି ତାଙ୍କ ଭାଲୁ ଭାଷାରେ ଏ କଠୋର ବ୍ୟବହାରର ଏପରି ସଶବ୍ଦ ପ୍ରତିବାଦ ଆରମ୍ଭ କରିଦେଲେ ଯେ, ବାଧ୍ୟହୋଇ ସେମାନଙ୍କୁ ପୁନର୍ଗ୍ରହଣ କରିବାକୁ ପଡ଼ିଲା ।

ଗୋପାଳ ବିଚାରିଲେ—ଏ ସ୍ଥାନ ଖଣ୍ଡିକ ଛାଡ଼ି ଅନ୍ୟତ୍ର ଚାଲିଯିବେ ; ହୁଏତ ଯାଇ ପୁଣି କଟକ ବ୍ୟତୀତ ଆନ୍ୟ କୌଣସି ସହରରେ ଆଶ୍ରୟ ନେବେ ବା ଜଙ୍ଗଲର ଏ ସ୍ଥାନଟା ଛାଡ଼ି ଅନ୍ୟତ୍ର ଆଶ୍ରୟ ଖୋଜିବେ ! ଏ ଖଣ୍ଡ ତ ଆଉ ଅଜଣା ଜାଗା ହୋଇ ରହିଲା ନାହିଁ । ମଦନବାବୁ, ତାଙ୍କ ଚାକର ବାକର, ବୀରେନ୍ଦ୍ର, ଖୋର୍ଦ୍ଧା ଡାକ୍ତରବାବୁ, ବାସୁ ମହାଜନ ଓ ମଧୁ ଏମାନଙ୍କଠାରୁ ତାଙ୍କ ବିଷୟ ଶୁଣି କେତେ ଅପରିଚିତ କୌତୂହଳରେ ଏ ସ୍ଥାନଟା ଦେଖିବାକୁ ଆସିବେ ଏବଂ ପରିଚିତ ବନ୍ଧୁମାନେ ତାଙ୍କୁ ଏ ଅଦ୍ଭୁତ ବେଶ୍ଭୂଷାରେ ଦେଖି ଉପହାସ କରିବା ପାଇଁ ସୁଯୋଗ ଛାଡ଼ିବେ ନାହିଁ । ସୁତରାଂ ଏ ସ୍ଥାନ ଛାଡ଼ିବା ଦରକାର ।

ମାତ୍ର—ମାତ୍ର ଏ ସ୍ଥାନ ଛାଡ଼ିବା ତ ଅତି ସହଜ ନୁହେଁ । କନକ ଏ ଖଣ୍ଡିକରେ ପାଦ ପକାଇଦେଇ ଯେ ଏହାକୁ ତୀର୍ଥ କରି ଦେଇ ଯାଇଛନ୍ତି ! ଏ ଚଉକିରେ କନକ ବସିଥିଲେ; ଏ ଗାଡଆରେ

ସେ ମୁହଁ ଧୋଇଥିଲେ ; ବଗିଚାରେ ସେ ବୁଲୁଥିଲେ । ତାଙ୍କ ବ୍ୟବହାରରେ ଲାଗି ତଉକ, ଗାଡ଼ୁଆ, ବଗିଚା ତଥା ଏ ସ୍ଥାନ ଖଣ୍ଡିକ ଯେ ପବିତ୍ର ତୀର୍ଥ ହୋଇଛି । ଏ ତୀର୍ଥର ସେ ଯେ ଉପଯୁକ୍ତ ପଣ୍ଡା, ସ୍ମୃତି-ପୂଜାର ଏ ଯେ ଏକମାତ୍ର କ୍ଷେତ୍ର । ଏ ସ୍ଥାନ ଛାଡ଼ିବାର ନୁହେଁ ।

ଏ କି ଦୁର୍ବଳତା ! ଯେ ଦିନେ କନକଙ୍କୁ ଭୁଲିବା ପାଇଁ, କନକ ପାଖରୁ ଦୂରେଇ ରହିବା ପାଇଁ ଏତେ ବ୍ୟାକୁଳ ହୋଇ, ଏତେ ଦୂରରେ ଆସି ନିର୍ଜନ ଜାଗାରେ ଆଶ୍ରୟ ନେଲେ । ଆଜି ତା'ର ସ୍ମୃତି ପୂଜା କରିବା ନିମନ୍ତେ ଏତେ ପ୍ରୟାସ କାହିଁକି ? ହୋଇକି ଯେତିକି ବେଶୀ ଦିନ ଯାଉଛି ସେତିକି ସେତିକି ବେଶୀ ଜୋରରେ ଯେ କନକ ତାଙ୍କୁ ବାନ୍ଧି ରଖିବାକୁ ବସୁଚି ! କନକ— କନକ ! ଏ କି ନିର୍ମମ କଠୋରତା ! ଅବଜ୍ଞାରେ ଛାଡ଼ିଦେଲି । ମୋ ଆଖି ଆଗରେ ମୋ ଅପେକ୍ଷା ଆଉ ଜଣକୁ ଉପଯୁକ୍ତ ମନେକରି ଗ୍ରହଣ କଲି । ତେବେ ସୁଦ୍ଧା ବନ୍ଦୀକରି ରଖିବାର କାରଣ କଣ ? ଏହିପରି ବସିରି ବସିରି ଗୋପାଳ ନିରାଶ ଓ ଆତ୍ମଗ୍ଲାନିରେ ନିଶ୍ଚେଷ୍ଟ ହୋଇ ରହି ବସିରୁହନ୍ତି—ଦାଣ୍ଡ ଦୁଆରେ ବେଶ୍ ଜୋରରେ କିଏ ଡାକିଲା, "ବାବୁ, ବାବୁ, ଶୋଇ ପଡ଼ିଛ କି ?"

ଗୋପାଳ ତରତର ହୋଇ ଯାଇ ଦୁଆର ଫିଟାଇ-ଦେଲେ । ଦେଖିଲେ, ଅଦିନରେ ଅସମୟରେ ଜଗୁଆ ଆସିଛି । ତା' ସଙ୍ଗେ ତା'ର ମା । ମହାଜନଙ୍କ ଦୁଆରେ ତାଙ୍କୁ ଦେଖିଲା ବେଳେ ତାଙ୍କର ଯେପରି ଲଜ୍ଜା ନ ଥିଲା, ସଙ୍କୋଚ ନ ଥିଲା, ଆଜି ସେହିପରି ଲଜ୍ଜାକୁ ଦୂରରେ ରଖି ନିଃସଂକୋଚରେ ସେ ତାଙ୍କ ଦୁଆରେ ଆସି ହାଜର ।

ଜଗୁଆ ମା ଗୋପାଳଙ୍କ ହାତଟି ଦେଖି କହିଲା, "ବାବୁ, ଆଜି ଆସିଛି, ତୁମକୁ ଗୋଟାଏ କଥା ପଚାରିବାକୁ ।"

ଗୋପାଳ ଉତ୍କଣ୍ଠାରେ ସହିତ ପଚାରିଲେ, "କି କଥା ! ଜଗୁଆ ହାତରେ ପଚାରି ପଠେଇଥିଲେ ତ ହୋଇଥାନ୍ତା । ନ ହେଲେ ମୁଁ ଯାଇଥାନ୍ତି ପଛେ । ତମେ କାହିଁକି ଏତେ ବାଟ ଆସିଲ ?"

ଜଗୁଆ ମା—ଚାଲିବାକୁ ମୁଁ ହଦେଇଯାଏ ନାହିଁ ମ ପୁଅ ! ତମମାନଙ୍କପାଇଁ ମୁଁ ବାଟ ଚାଲିବାକୁ ହଦେଇଗଲେ ହବ କଅଣ ?

ଗୋପାଳ ମନେ ମନେ ବୁଢ଼ୀକି ନମସ୍କାର କଲେ । ମାଙ୍କୁ ଚିହ୍ନିବା ପୂର୍ବରୁ ମା' ତାଙ୍କୁ ଛାଡ଼ି ଚାଲି ଯାଇଥିଲେ । ଆଜି ମନେ ହେଲା, ସତେ ଯେପରି ତାଙ୍କର ମା' ଏ ବୁଢ଼ୀର ରୂପ ଧରି ତାଙ୍କୁ ଆଶୀର୍ବାଦ କରିବା ନିମନ୍ତେ ମର୍ତ୍ତ୍ୟରେ ଅବତୀର୍ଣ୍ଣ ହୋଇଛନ୍ତି ।

ଜଗୁଆ ମା ପ୍ରଶ୍ନ କଲା, "ଆଚ୍ଛା, ପୁଅ ! ତୁମେ ଇମିତି ଏକୁଟିଆ ହୋଇ ଜଙ୍ଗଲଟାରେ କାହିଁକି ଅଛ କହିଲ ?"

ଗୋପାଳ ତୁନି ହୋଇ ରହିଲେ ।

ଜଗୁଆ ମା ପୁଣି କହିଲା—ପୁଅ, ଏଇ କଥା ମୁଁ ତୁମକୁ ପଚାରିଥିଲି ସେଦିନ, ଯେଉଁଦିନ ତମେ ଦୟା କରି ମୋ' ଅରକ୍ଷିତ ପିଲାପୋଡଙ୍କୁ ରକ୍ଷାରକ୍ଷଣ କଲ । ସେଦିନ ଯାହା କହିଥିଲ, ସେଥିରୁ ବୁଝିଥିଲି ତମେ ଖାମଖିଆଲି ଲୋକ , ଗୋଟାଏ କିଛି ଖିଆଲ ଧରିଛ । ଏତେ ଦିନକେ ଅସଲକଥା ବୁଝିଛି । କିନ୍ତୁ ତମେ ଯାହା କରିଛ, ସେ କଥା ଭଲ ହେଲା ନାହିଁ ଏକା । ଯେଉଁ କଥାପଦକେ ତମେ ତାକୁ ଛାଡ଼ି ନିରାଶାରେ ଜଙ୍ଗଲକୁ ପଳାଇ ଆସିଲ, ସେଥିରେ ଅନ୍ୟ ଲୋକ ଆଶା ପାଇ ଆନନ୍ଦିତ ହୋଇଥାନ୍ତା ।"

ଗୋପାଳ ତୁନ ହୋଇ ରହିଲେ ।

ଜଗୁଆ ମା ପୁଣି କହିଲା, "ତୁମେ ଭୁଲ କରିଛ, ପୁଅ ! ତେବେ ତମର କିଛି ଦୋଷ ନାହିଁ । ପିଲାଲୋକ ; ତରୁଣୀ ମନ ଜାଣିବ କୁଆଡୁ ? ମାଇକିନିଆ ହୃଦୟ ଜାଣିବାକୁ ହେଲେ ତରବର ହେବାର ନୁହେଁ ; ଟିକକ କଥାରେ ନିରାଶ ହେବାର ନୁହେ । ମାଇକିନିଆ ଝିଅଙ୍କ ମନ କିଣିନେବାର ଯେବେ ଇଚ୍ଛା, ତେବେ ଅଧୀର ନ ହୋଇ ଲାଗିଥିଲେ ସିନା ହେବ । ତମେ ତାକୁ ଥରକୁ ଦି'ଥର ପଚାରିଲ ନାହିଁ ? ପଦେ କଥାରେ ନିରାଶ ନ ହୋଇ ଆଉ କିଛିଦିନ ଚେଷ୍ଟା କଲ ନାହିଁ ? ଏତେ ବେଗି ଏତେ ବଡ଼ କଥାଟାଏ କରି ପକାଇଲ, କାହିଁକି ?"

ଗୋପାଳ ତଥାପି କିଛି କହିଲେ ନାହିଁ । ଏ କଅଣ ? ବୁଢ଼ୀ ଏତେ କଥା ଜାଣିଲା କୁଆଡୁ ? ଯାହା ତାଙ୍କ ହୃଦୟ ଲଜ୍ଜା ପାଇଁ ପର୍ଯ୍ୟନ୍ତ ଜାଣେ ନାହିଁ, ତାହା ଅମୂଳରୁ ବୁଢ଼ୀ ଗୋଚରକୁ ଆସିଲା କୁଆଡୁ ? ଗୋପାଳ କିଛି ବୁଝି ପାରିଲେ ନାହିଁ ।

ଜଗୁଆ ମା କହିବାକୁ ଲାଗିଲା, "ଗୋଟିଏ କାମ କର ପୁଅ । ଯାଅ କଟକକୁ, ଚେଷ୍ଟାକର, ଫଳ ଫଳିବ । ସିଂହ ଶୋଇ ପଡ଼ିଥିଲେ ମିରିଗ କ'ଣ ମନକୁ ତା ପାଟିରେ ଆସି ପଶିଯିବ ?"

ଗୋପାଳ ଗୁଣୁଗୁଣୁ ହୋଇ କହିଲେ, "ନା, କଟକ ଗିବାରେ କିଛି ଫଳ ନାହିଁ ।"

ବୁଢ଼ୀ—ଫଳ ନାହିଁ ? ସେ ପରା ଏଠିକି ଆସିଥିଲା ? ତାକୁ ଦେଖି କ'ଣ ଠଉରେଇଲ ?

ଏଥର ଗୋପାଳ ଉତ୍ତେଜିତ ହୋଇ କହିଲେ, "କଣ ଠଉରେଇଲି ! ବୁଝିଲି, ମୁଁ ଆଗରୁ ଯାହା ବୁଝିଥିଲି, କଥା

ସେଇଆ । ଆଖିରେ ଦେଖିଲି, ମୋଠାରୁ ଅଧିକ ଉପଯୁକ୍ତ ପାତ୍ରରେ ବର୍ତ୍ତମାନ ସେ ରହିଛି । ମୁଁ ତା'ର ହୃଦୟରେ ଯେଉଁ ଆସନ ଅଧିକାର କରିବା ନିମନ୍ତେ ଏତେ ଉତ୍କଣ୍ଠିତ ଥିଲି, ତାହା ବର୍ତ୍ତମାନ ସୁରେନ୍ଦ୍ରର ହୋଇଛି ।"

ଜଗୁଆ ମା ଏକଥା ଶୁଣି ଖୁବ୍ ଗୁଡ଼ାଏ ହସି କହିଲା, "ଠିକ୍ ଠଉରେଇଛୁ ଏବା ! ନାହିଁ ହେ ପୁଅ ! ଯାହା ବିଚାରୁଛ, ସେପରି କିଛି ହୋଇନାହିଁ । ନ ହୋଇଛି, ତମ ଭାଗ୍ୟଯୋଗୁଁ । ତମେ ଦାମି ଜିନିଷଟାଏ ମେଳରେ ଫୋପାଡ଼ିଦେଇ ଆସିଲ, ଯେ ଦେଖନ୍ତା ସେ ଗୋଟେଇ ନିଅନ୍ତା ; ମାତ୍ର ତମ ଭାଗ୍ୟଯୋଗୁଁ ସେପରି କିଛି ହୋଇନାହିଁ । ଭଗବାନ୍ ତାକୁ ତୁମପାଇଁ ରଖିଛନ୍ତି । ଗଲେ ତାକୁ ପାଇବ ।"

ଗୋପାଳ—ନା, ମୁଁ ଆଉ ଯିବି ନାହିଁ । ତମେ ମା ଯାହା କହୁଛ, ସେ କଥାରେ ସତ୍ୟ ଥାଇପାରେ । କିନ୍ତୁ କନକଙ୍କ ଘରେ ପଶିବାର ଅଧିକାର ଯେ ମୋର ନାହିଁ ! ତାଙ୍କ ବାପା ମୋତେ ଦୁଆର ମନା କରିଛନ୍ତି । ମୁଁ ବି ପ୍ରତିଜ୍ଞା କରିଛି, ଆଉ କନକଠାରୁ କୌଣସି ପ୍ରତ୍ୟାଶା ରଖିବିନାହିଁ । ସେ ଏବଂ ମୁଁ—ଦୁହିଙ୍କ ମଧ୍ୟରେ ବ୍ୟବଧାନ ଯେତେ ଦୂର ରହିପାରେ ସେତେ ବ୍ୟବଧାନ ରଖିବା ନିମନ୍ତେ ମୁଁ ପାରୁପର୍ଯ୍ୟନ୍ତ ଚେଷ୍ଟା କରିବି ।

ଜଗୁଆ ମା ଏକଥା ହସି ଉଡ଼େଇ ଦେଇ କହିଲା—ଓଃ ! ଏ ପୁଣି ଗୋଟାଏ କଥାର କଥା । ପ୍ରତିଜ୍ଞା ଭଲଆ ପ୍ରତିଜ୍ଞା କଲେ ସିନା ହେବ । ନ୍ୟାଯ୍ୟ କଥାରେ ପ୍ରତିଜ୍ଞା ଅବଶ୍ୟ ପାଳିବାକୁ ହୁଏ । ସେପରି ପ୍ରତିଜ୍ଞା ନ ପାଳିଲେ ଅଧର୍ମ । କିନ୍ତୁ ତମେ ଯେଉଁଟା କରିଛ, ସେ ପୁଣି ଗୋଟାଏ କି ପ୍ରତିଜ୍ଞା ? ଏ ତ ଅଭିମାନ । ଆଉ ତାଙ୍କ ବାପାଙ୍କ

କଥା ଯାହା କହିଲ, ସେଥିରେ କଣ ଅଛି ? ସେ ତ ଆମ ହିନ୍ଦୁ ଘର ନୁହେ ଯେ ବାପା କଥା ଅନୁସାରେ ଝିଅ ଚଳିବାକୁ ବାଧ୍ୟ ହେବ । ଝିଅର ମନ ଥିଲେ ସେ ତୁମକୁ ବାହା ହେବ । ବାପ ମାଗିଲେ ଆସ୍ତୁ, ନ ମାଗିଲେ ଆସ୍ତୁ ।

ଗୋପାଳ ମନେ ମନେ ବୁଢ଼ୀର ଏ ବୁଦ୍ଧିକୁ ଭାରି ପ୍ରଶଂସା କଲେ । ବାସ୍ତବିକ ଏ ଘଟଣା ତ ତାଙ୍କୁ ଦିଶି ନ ଥିଲା । କନକ ସଙ୍ଗେ ଏ ଜଙ୍ଗଲରେ ଦେଖାହେବା ଦିନଠାରୁ ତାଙ୍କର ବାନ୍ଧିବାର ମନ ହୋଇଛି, ଆଉ ଥରେ ଯାଇ କନକର ପ୍ରେମଭିକାରୀ ହୁଅନ୍ତେ । ସେତେବେଳେ ଏହି ଦୁଶ୍ଚିନ୍ତା ହିଁ ତାଙ୍କୁ ଅଟକାଉଥିଲା । ଆଜି ମଫସଲର ତଥାକଥିତ କୁସଂସ୍କାରଚ୍ଛନ୍ନ ପଲ୍ଲୀରମଣୀର ଏ ଚତୁର ଯୁକ୍ତି ଆଗରେ ସେ ଆନନ୍ଦରେ ସହିତ ହାର ମାନିଲେ ଏବଂ ମୌନ ରହି ଜଣାଇ ଦେଲେ, ତାଙ୍କର ଇଚ୍ଛା ଜଗୁଆ ମା ଇଚ୍ଛାର ବିରୋଧୀ ନୁହେ । ଜଗୁଆ ମା ଏକଥା ବୁଝି ଭବିଷ୍ୟତ କାର୍ଯ୍ୟପନ୍ଥା ବିଷୟରେ ଆଉ କିଛି ନ କହି ଅଳ୍ପ ସମୟ ପରେ ନିଜ ଘରକୁ ଫେରିଲା ।

## ଏକୋଇଶ

ଆଉ ପନ୍ଦର ଦିନ ପରର କଥା । ଦୁଇ ଚାରିଦିନ ଭାରି ବର୍ଷା ହୋଇ ମେଘ ଟିକେ ଛାଡ଼ି ଯାଇଥାଏ । ଆକାଶ ନିର୍ମଳ । ବୃଦ୍ଧ ସୂର୍ଯ୍ୟଙ୍କ ଆଶୀର୍ବାଦ ପଶ୍ଚିମ ଆକାଶରୁ ଆସି ପୃଥିବୀ ଉପରେ ପଡ଼ି ତାର ମୁହଁକୁ ହସହସ କରୁଥାଏ । ମେଘ ଅକାଳରେ ଆସି ଗଛ ପତ୍ରଗୁଡ଼ିକୁ ବଡ଼ ଘାତ କରିଦେଇଥିଲା । ସେମାନେ ସ୍ଥିର ନିଶ୍ଚଳ ହୋଇ ସତେ ଏ ଅକାଳ ଉପଦ୍ରବ ଗଲାଣି କି ନାହିଁ ବୋଲି ଚାରି-ଆଡ଼କୁ ଛଳଛଳ ଆଖିରେ ଚାହିଁଛନ୍ତି ।

କନକଙ୍କର ହୃଦୟ-ଆକାଶ ଆଜ ନିର୍ମଳ । ମେଘ ଅନ୍ଧାର, ବର୍ଷା, ବଜ୍ରପାତ ସବୁ ଯାଇଛି । ଆଉ ଫେରିବ ନାହିଁ । ବୁଢ଼ୀ ଜଗୁଆ ମା ସୂର୍ଯ୍ୟକିରଣ ପରି ଶେଷରେ କୁଆଡ଼ୁ ଆସି ସବୁ ପରିଷ୍କାର କରିଦେଇଛି । ଅଗସ୍ତି ତାପରି ତାଙ୍କ ହୃଦୟରୁ ସବୁ କାଦୁଅ ଦୂର କରିଛି । କ'ଣ କର୍ତ୍ତବ୍ୟ, କ'ଣ ଅକର୍ତ୍ତବ୍ୟ, ସେ ବୁଝିଛନ୍ତି । ଆଜି ଆଉ ତାଙ୍କର ସଙ୍କୋଚ ନାହିଁ, ଇତସ୍ତତଃ ଭାବ ନାହିଁ । କଣ କରିବେ ଏବଂ କ'ଣ କରିବା ଉଚିତ, ସ୍ଥିର କରି ସାରି ସେ ବାପାଙ୍କୁ ଖଣ୍ଡିଏ ଚିଠି ଲେଖୁଛନ୍ତି —

ବାପା,

ଅଭାଗିନୀ ଝିଅ ଆଜି ତୁମର ଆଶୀର୍ବାଦରୁ ବଞ୍ଚିତ ହୋଇ ଘର ଛାଡ଼ି ଚାଲିଯିବାକୁ ପ୍ରସ୍ତୁତ । ବାପା , ଏ ଘରେ ମୁଁ କେତେ ଆନନ୍ଦ ଭୋଗିଛି, ତୁମର ହାତରୁ କେତେ ଲାଳନପାଳନ, କେତେ ସ୍ନେହ ପାଇଛି । ହଠାତ୍ ଅବାଧ୍ୟ ହୋଇ ତୁମକୁ ଦେଖା ସୁଦ୍ଧା ନ ଦେଇ ଚାଲିଗଲି ବୋଲି ଶୁଣିଲେ ତୁମ ହୃଦୟରେ ନିଶ୍ଚେ ଆଘାତ ହେବ—ମୋର କୃତଘ୍ନତା ତୁମକୁ ନିଶ୍ଚୟ ମର୍ମାହତ କରିବ ।

କିନ୍ତୁ ଅଗତ୍ୟା ମୁଁ ତୁମକୁ ଏ ଆଘାତ ଦେବା ନିମନ୍ତେ ବାଧ୍ୟ ହେଉଛି ! ତୁମକୁ ଦେଖାଦେଇ ସବୁ ହାଲ ପରିଷ୍କାର କରି କହି ବିଦାୟ ଏବଂ ତାଙ୍କ ସଙ୍ଗେ ସମ୍ଭବ ହେଲେ ଆଶୀର୍ବାଦ ନେଇ ଯିବାକୁ ମୋର ସାହସ ହେଉନାହିଁ । କାରଣ ମୁଁ ଅବଳା, ମୋର କଥା ନ ଶୁଣି ମୋ ପ୍ରତି ଜୋର ଜବରଦସ୍ତି ଆରମ୍ଭ କଲେ ଆତ୍ମରକ୍ଷା କରିବାର କ୍ଷମତା ଯେ ମୋର ରହିବ ନାହିଁ !

ବାପା, ମୁଁ ଚାଲିଯିବାଦ୍ୱାରା ଅପରାଧ କରୁଛି ବୋଲି ନିଜେ ଜାଣିପାରୁ ନାହିଁ । ତୁମର ଦୟାରେ ମୁଁ ଏ ପର୍ଯ୍ୟନ୍ତ ବହି ପଢ଼ି

ଶିକ୍ଷିତ ଉନ୍ନତ ଲୋକଙ୍କ ସମ୍ପର୍କରେ ଆସି ଯେଉଁ ଶିକ୍ଷା ପାଇଛୁ, ବିଶେଷତଃ କଲ୍ୟାଣମୟୀ ଜଗୁଆ ମା ମୋର ହୃଦୟରେ ଯେଉଁ ଜ୍ଞାନର ମଞ୍ଜି ପୋତିଛୁ, ତାହାଁର ଫଳରେ ବୁଝୁଛି ମୁଁ ଯାହା କରୁଛି ତାହା ନ୍ୟାୟସଙ୍ଗତ । ଏଥିରେ କୌଣସି ଅନ୍ୟାୟ ନାହିଁ । ଅପରାଧ ନାହିଁ । ତଥାପି ମୋ କାର୍ଯ୍ୟରେ ଯଦି ତୁମେ ଅପରାଧ ଦେଖିବ, ମୋ କାର୍ଯ୍ୟରେ ଯେବେ ତୁମେ ମର୍ମାହତ ହେବ ତାହା ହେଲେ ଅନୁମତି ଦେଲେ ଭବିଷ୍ୟତରେ ମୁଁ ଆସି ଉପଯୁକ୍ତ ପ୍ରାୟଶ୍ଚିତ୍ତ କରିବି । ଯଥାସାଧ୍ୟ ଚେଷ୍ଟା କରି ତୁମ ହୃଦୟରୁ ଆଘାତ ଦୂର କରିବି ।

ବାପା, ଯେଉଁଦିନ ତୁମରି ଆଦେଶରେ ଗୋପାଳ ବାବୁ ଆସି ମୋତେ ପାଠ ପଢ଼ାଇବା ଭାର ନେଲେ, ସେହି ଦିନୁ ବା ତାହାଁର ଅଳ୍ପଦିନ ପରେ ମୁଁ ମୋ ଜୀବନ ତାଙ୍କୁ ବିକି ଦେଇଥିଲି । ମନେ ମନେ ମୋର ଭବିଷ୍ୟତ ଜୀବନକୁ ଅଚ୍ଛେଦ୍ୟ ବନ୍ଧନରେ ତାଙ୍କ ଜୀବନ ସାଙ୍ଗେ ବାନ୍ଧି ଦେଇଥିଲି ।

ହଠାତ୍ ଦିନେ ବୁଝିଲି, ଏ ବନ୍ଧନ ତୁମର ଈପ୍‌ସିତ ନୁହେ । ସେ ଦିନ ମୁଁ କିଂକର୍ତ୍ତବ୍ୟବିମୂଢ଼ ହୋଇ ତୁମ ପ୍ରତି କର୍ତ୍ତବ୍ୟ ଦୃଷ୍ଟିରେ ପ୍ରତିଜ୍ଞା କରି ତାଙ୍କୁ ଅନିଚ୍ଛା ସତ୍ତ୍ୱେ ଜୋର କରି ହୃଦୟରୁ ତଡ଼ିଦେଲି । ତୁମରି ଆଦେଶମତେ ତୁମରି ମନୋନୀତ ପାତ୍ରରେ ମୋର ହୃଦୟର ସମସ୍ତ ସମ୍ପଦ ଢାଳିଦେବାକୁ ପ୍ରସ୍ତୁତ ହୋଇଥିଲି । ମାତ୍ର ବାପା, କନ୍ୟାର ପିତୃଭକ୍ତି ଏବଂ ଯୁବତୀର ପ୍ରେମ ଏକତ୍ର ଯାଇପାରିଲା ନାହିଁ । ମୁଁ କ'ଣ କରିବି ? ତୁମରି ଆଦେଶ ଉପରେ ମନରେ ପାଳୁଥିଲେ ସୁଦ୍ଧା ଭିତର ମନରେ ମୁଁ କ୍ରମେ କ୍ରମେ ତୁମରି ଶାସନ-ଆତିଶଯ୍ୟ ବିରୁଦ୍ଧରେ ବିଦ୍ରୋହୀ ହୋଇ ଉଠିଲି । କାଳକ୍ରମେ ଏ ଆନ୍ତରିକ

ବିଦ୍ରୋହର ଦମନ ସମ୍ଭବପର ହୋଇଥାନ୍ତା କି ନାହିଁ କେଜାଣି ? ଯାହାହେଉ, ମୁଁ ଏ ଦୋଷୀଙ୍କ ଆ ମନୋଭାବର ଆଜ ସମୂଳ ଲୋପ କରି ଯାହା ମନେ ମନେ ବିଶ୍ବସୁଛି ତାହା କରିବା ନିମନ୍ତେ ସାହସ ବାନ୍ଧିଛି । ତୁମ ପାଖେ ହୃଦୟର କଥା ନ ଲୁଚାଇ ଆଜ ସବୁ ଫିଟାଇ କହି ପାରିଲି ବୋଲି ମୋର ଅସୀମ ଆନନ୍ଦ । ତୁମଭଳି ବାପାର ଝିଅ ନ ହୋଇଥିଲେ ଏହା କରି ପାରିଥାନ୍ତି କି ନାହିଁ ସନ୍ଦେହ ।

ଯାଉଛି, ବାପା ; ବିଦାୟ ଦିଅ ଏବଂ ମୋର ପୂର୍ବ ବାଧ୍ୟତା ସ୍ମରଣ କରି ବର୍ତ୍ତମାନର ଏ ଅବାଧ୍ୟତାକୁ କ୍ଷମା କର । ଏତିକିମାତ୍ର ମୋର ପ୍ରାର୍ଥନା । ତୁମରି

ସ୍ନେହପାଳିତା କନ୍ୟା

କନକ

ଚିଠି ଖଣ୍ଡି ଶେଷକରି ଲଫାପା ଭିତରେ ମୁଦି କନକ ଧୀରେ ଧୀରେ ବାପାଙ୍କ ବୈଠକଖାନାକୁ ଗଲେ । ମଦନବାବୁ ବିବାହ ସମ୍ପର୍କୀୟ କାର୍ଯ୍ୟରେ ବାହାର ହୋଇଥିଲେ । କନକ ଚିଠି ଖଣ୍ଡି ଆରାମଚୌକି ହାତ ଉପରେ ରଖି ପଡ଼ିଯିବ ନାହିଁ ବୋଲି ତା ଉପରେ ଗୁପାଦେଇ ଟିକିଏ ବଇଠକଖାନାଟିର ଚାରିପାଖ ଚାହିଁ ଦେଖିଲେ ଏବଂ ଶେଷରେ ଛଳଛଳ ଆଖିକରି ଆରାମଚୌକି ପାଖେ ବାପାଙ୍କ ଉଦ୍ଦେଶ୍ୟରେ ମୁଣ୍ଡିଆଟିଏ ମାରି ନିଜ ଶୋଇବା ଘରକୁ ଫେରିଲେ ।

ସେଠାରେ ସମସ୍ତ ଜିନିଷ ଯଥାସ୍ଥାନରେ ରଖି ମା'ଙ୍କର ଖଣ୍ଡିଏ ଫଟୋମାତ୍ର ଧରି ପାଞ୍ଚ ମିନିଟ ମଧ୍ୟରେ କନକ ଛାଡ଼ିଯାଉଥିବା

ଘରକୁ ଥରକୁ ଥର ଫେରି ଶୃଙ୍ଖୁଁ ଶୃଙ୍ଖୁଁ ବାହାର ହୋଇ ବଜାରର ଲୋକ ଗହଳରେ କୁଆଡ଼େ ମିଶିଗଲେ ।

## ବାଇଶ

ମଦନବାବୁ ଯାଇଥିଲେ ତାଙ୍କ ବନ୍ଧୁ ବ୍ରାହ୍ମସମାଜର ଆଚାର୍ଯ୍ୟଙ୍କ ଘରକୁ ବିବାହର ମୁହୂର୍ତ୍ତ ପ୍ରଭୃତି ସ୍ଥିରକରି ଆସିବା ନିମନ୍ତେ । କାଲି ସନ୍ଧ୍ୟା ୬ଟା ସମୟରେ ବିବାହ । ଆଚାର୍ଯ୍ୟ ମହାଶୟ ଅତି ଆନନ୍ଦର ସହିତ ସାଢ଼େ ୫ଟା ବା ତହିଁ ପୂର୍ବରୁ ବିବାହ ରେଜିଷ୍ଟ୍ରାର ବହି ଏବଂ ତାଙ୍କର ଆଶୀର୍ବାଦ ସହ ଯାଇ ବିବାହକାର୍ଯ୍ୟ ସମ୍ପନ୍ନ କରିବେ ବୋଲି ବାରମ୍ବାର ପ୍ରତିଶ୍ରୁତ ହେଲେ । ଅବିବାହିତା ଉତ୍ତୀର୍ଣ୍ଣବୟସ୍କା ଆଚାର୍ଯ୍ୟକନ୍ୟାଗଣ ନିଜର ବିବାହ ଆଶା ନ ଥିବାରୁ ଅନ୍ୟର ବିବାହକୁ ନିଜର ପରି ମନେକରି ଅତି ସଲଜ୍ଜ ଉଲ୍ଲାସରେ ମଦନ ବାବୁଙ୍କର ଖୁବ୍ ସତ୍କାର କଲେ । ଏ ସତ୍କାରରେ ଆପ୍ୟାୟିତ ହୋଇ ଆଚାର୍ଯ୍ୟ ତାଙ୍କ ପତ୍ନୀ ନିଜ କନ୍ୟାମାନଙ୍କର ଭବିଷ୍ୟତ୍ ସୁଖ ଦୁଃଖ ନିମନ୍ତେ ତାଙ୍କ ଜାଣିବାରେ ବିଶେଷ ଯତ୍ନ ନେଇନଥିବାରୁ ତାଙ୍କୁ ମନେମନେ ନାପସନ୍ଦ କରି ମଦନବାବୁ ଘରକୁ ଫେରିଲେ । ଫେରିଲା ବେଳକୁ ରାତି ପ୍ରାୟ ୧୦ ଟା । ତାଙ୍କର ଖାଇବା କାର୍ଯ୍ୟ ସନ୍ଧ୍ୟା ପୂର୍ବରୁ ଶେଷ ହୋଇଯାଏ । ସୁତରାଂ କାହାକୁ କିଛି ନ କହି କନକର ଖୋଜଖବର ନେବା ଅନାବଶ୍ୟକ ମନେକରି ସିଧା ସିଧା ଖଟରେ ଯାଇ ଶୋଇ ପଡ଼ିଲେ ।

ଦିନଯାକ ପରିଶ୍ରମ ବହୁତ ହୋଇଥିବାରୁ ଅଳ୍ପକେ ନିଦ ହୋଇଗଲା; ମାତ୍ର ନିଦ୍ରାସୁଖ ବେଶୀକ୍ଷଣ ସ୍ଥାୟୀ ହେଲାନାହିଁ । ଘଡ଼ିଏ ଖଣ୍ଡେ ଶୋଇଛନ୍ତି କି ନାହିଁ—ପ୍ରାୟ ବାରଟା ବେଳେ

ହଠାତ୍ ମାଧିଆ ଆସି ବାବୁଙ୍କୁ ଭଲକରି ହଲାଇ ଦେଇ ଚିତ୍କାର କଲା, "ବାବୁ, ବାବୁ, ଉଠ ।"

ମଦନବାବୁ ଧଡ଼କନା ବିଛଣାରୁ ଉଠି ବସିଲେ ଏବଂ ବିରକ୍ତିରେ ମାଧିଆ ଆଡ଼କୁ ଆଖି ମଳମଳ ଚାହିଁଲେ । ମାଧିଆ କହିଲା, "ବାବୁ, ଦାଦା ରାତି ୮ଟା ବେଳୁ କୁଆଡ଼େ ଯାଇଛନ୍ତି ଯେ ଏତେ ବେଳଯାଏ ଫେରି ନାହାନ୍ତି ।"

ମଦନବାବୁଙ୍କ ବିରକ୍ତି ବଢ଼ିଲା ନା କମିଲା କେଜାଣି ? ସେ ବ୍ୟସ୍ତସମସ୍ତ ହୋଇ କହିଲେ—"ଏଁ—ମୁଁ ଆସିଲାବେଳେ ମତେ କହିଲୁ ନାହିଁ, ବେ ।"

ମାଧିଆ—ମୁଁ କମିତି ଜାଣନ୍ତି ? ମୁଁ ବିଚାରିଲି ସେ ଫେରି ଆସିବେ । ଏତେ ବେଳଯାଏ ଫେରିଲେ ନାହିଁ ।

ବାବୁ—ଏଁ, ଏତେବେଳଯାଏ ଫେରିଲା ନାହିଁ ! ତମରି ସବୁ ଫିସାଦ । ରହ ଆଉ ଯୋଡ଼ାଏ ଖୁଞ୍ଜାଏ ଦିନ ଯାଉ ତମ ଚାକର ଦଫାଙ୍କୁ ସାଧି କରି ଦେବି ଯେ ।

ମହାବ୍ୟସ୍ତରେ ବୃଦ୍ଧ ଧାଇଁ ଯାଇ କନକଙ୍କର ଶୋଇବା ଘର ଖଟକୁ ଚାହିଁଲେ । ଲଇଁପଡ଼ି ଖଟତଳକୁ ଭଲକରି ଦେଖିଲେ— କାହିଁ ନାହିଁ ! କୁଆଡ଼େ ଗଲା ? ଖଟ ଉପରେ ନାହିଁ···ଖଟ ତଳେ ବି ନାହିଁ । ତା ହେଲେ ?

ଓଃ, ବୀରେନ୍ଦ୍ରଙ୍କ ଘରେ ଯାଇ ଗପ କରୁ କରୁ ବୋଧହୁଏ ଟିକିଏ ଡେରି ହୋଇଯାଇଛି । ଏ ଓଳି ଚାକରଗୁଡ଼ାକ ବୁଝୁଛନ୍ତି କଣ ? ଭୁଚ୍ଛାଟାକୁ କେତେ ଭୟ ଦେଖିଲା ! ବୀରେନ୍ଦ୍ର ଘରକୁ ତ ଯାଇଛି, ଛତିଟାଏ କଣ ? ଅଜ ରାତିଟା ପାଇଲେ ତ ବୀରେନ୍ଦ୍ର ଘର ତା'ର ହୋଇଯିବ ।

ମଦନ ବାବୁ ଏହିପରି ବସ୍ତୁରେ ବସ୍ତୁରେ ଶୋଇବା ଘର ଆଡ଼କୁ ମୁହାଁଇଲେ । ପୁଣି ବିଚାରିଲେ, ବୀରେନ୍ଦ୍ର ଘର ତା'ର ହେଲେ ହେଉ । ଯେଉଁ କେତେଟା ଧନ ଏଠାରେ ରହିବ ସେ କେତେଟା ଧନରତ୍ନ ଏହି ଘରେ ତ କଟାଇବାର କଥା । ଆଚ୍ଛା, ବୀରେନ୍ଦ୍ର ଘରକୁ ଯାଇ ତାକୁ ଡାକି ଆଣିବା ଦରକାର ।

ବୀରେନ୍ଦ୍ରଙ୍କ ଦୁଆରମୁହଁକୁ ଯାଇ ଦେଖିଲେ, ଦୁଆର ମେଲା । ଭିତରୁ ଗୋଟାଏ କିଛି ଚିତ୍କାର ଶୁଭୁଛି । ବୀରେନ୍ଦ୍ର ଘର ତ ତାଙ୍କ ଘର ଭଳିଆ । କାହାକୁ ନ ଡାକି ଚୁପ ହୋଇ ବାବୁ ବୀରେନ୍ଦ୍ରଙ୍କ ଘରେ ପଶିଲେ । ଉପର ମହଲକୁ ଉଠୁଥାନ୍ତି, ପାଖ ଘରରୁ ଭୀଷଣ ଚୀତ୍କାର ଶୁଭିଲା । ମଦନ ବାବୁ ନିଜେ ଚୀତ୍କାର କରନ୍ତି ଖୁବ୍, କିନ୍ତୁ ଅନ୍ୟ କେହି ଚୀତ୍କାର କଲେ ତାଙ୍କର ଭାରି ଭୟ ହୁଏ । ସେ ଅତି ସନ୍ତର୍ପଣରେ କବାଟ ପାଖେ କାନଡେରି ଶୁଣିଲେ ।

ଭିତରେ ବୀରେନ୍ଦ୍ର ଜଣେ କାହା ଉପରେ ବେଶ୍ ବେଗରେ ହାତ ଚଳାଇ କହୁଛନ୍ତି, "ତୁଇ କନକ ପାଖକୁ ସେ ଚିଠି ଦେଇଥିଲୁ ପରା ? ଓଃ, କେଡ଼େ ଭଲମଣିଷଟାଏ ହେ ! କନକ ତୋ ସାଙ୍ଗ ବୋଲି ତାକୁ ସତର୍କ କରି ଦେଇଥିଲୁ, ନା ? ଏବେ କଣ ହେଲା, ବଦମାସ ! ତୋ ସତର୍କ ଫଳରେ ତୋ ସାଙ୍ଗର ଯାହା ଉପକାର ହେଲା କାଲି ଜାଣିବୁ । ଆଜି ତୋ'ର ପୁରସ୍କାର ତ ସେଦିନ ମିଳିଛି, ଆଜି ମିଳୁଛି – ମଲାଯାଏ ମିଳୁଥିବ ।"

ମାଡ଼ ଖାଉଥିବା ବ୍ୟକ୍ତି ଜଣେ ନାରୀ । ସେ ଏ ମାଡ଼ରେ ଟିକିଏ ସୁଦ୍ଧା ନ କାନ୍ଦି କଠୋର ସ୍ୱରରେ କହୁଛି—ମାର,

କେତେ ମାରିବ । ତମ ମାଡ଼କୁ ମୁଁ ଡରିଛି ! ତମ ଅତ୍ୟାଚାରର ସହି ସହି ଏତେଦିନ ଗଲାଣି । ଆଉ ଟିକିଏ ଭଲକରି ମାରି ମୋ' ପ୍ରାଣଟା ହେଲେ ନେଇଯାନ୍ତୁ ।

ବୀରେନ୍ଦ୍ର ବଜ୍ରକଠୋର ସ୍ୱରରେ କହିଲେ—ତୋ' ପ୍ରାଣଟା ନେବି ଯେ—ଏଇଲାଗେ ନୁହେଁ । କାଲି ବାପାଙ୍କର ସନ୍ଧ୍ୟା । ତୋ ଚିଠିରେ ବିଶ୍ୱାସ କରି ଯେ, ନିଶିକାନ୍ତଙ୍କୁ ଲୋକ ପଠେଇଥିଲୁ ତାଙ୍କୁ ବି ସାଧି କରିବି ; ଆଉ ତା'ରି ଆଗରେ, ତୋତେ ସେ ଭଲକରି ଚିହ୍ନିବା ପରେ, ତୋ ପ୍ରାଣ ନେବି । ମତେ ଚିହ୍ନି ନ ଥିଲୁ ନା ? ମୋ ନାମରେ ଚିଠି ଲେଖିବାକୁ ତୋର ଏତେ ସାହସ ? ଜାଣି ନାହୁଁ ମୁଁ କିଏ ?

ଏ ଶେଷ କଥାଟା କହି ସାରିବା ପରେ ବୋଧହୁଏ ନିଜକୁ ଭଲରୂପେ ଚିହ୍ନାଇଦେବା ଉଦ୍ଦେଶ୍ୟରେ ବୀରେନ୍ଦ୍ର ବାବୁ ଜୋତା କାଢ଼ି ଅନ୍ୟ ଗୋଟାଏ କଣ୍ଟା ନାଡ଼କଠୋର-କୋମଳ ଜିନିଷରେ ପ୍ରହାର ଆରମ୍ଭ କରିଦେଲେ । ମାଡ଼ର ଟିକିଏ ବିରାମ ହେବାରୁ ପୁଣି ବକ୍ତୃତା ଆରମ୍ଭ ହେଲା । ବୀରେନ୍ଦ୍ର କହିଲେ, "କେ ଜାଣେ ! ଚିଠି ପରା ଦେଇଥିଲୁ, କଣ ହେଲା ? ନିଶିକାନ୍ତଙ୍କୁ ପରା ଡାକିଥିଲୁ, ଗଲା ତୋ ସାଙ୍ଗେ ଦେଖା କରିବାକୁ ? ତୁ ମୋ ଲୋକଙ୍କ ହାତରୁ ଖସିଲାବେଳକୁ ପରା ମୁଁ ଜାଣେ, ଗୋଟାଏ କାଳୁ କାଣ୍ଡ ଭିଆଇବୁ ବୋଲି । ତୋ ଭଲପଣିଆ ଭାଙ୍ଗି ଦେଉଛି । ତୋ ସାଙ୍ଗେ ତାଙ୍କୁ ବି ସାଧି କରିବି ଯେ ? ତୋ ଚିଠି ପାଇ କରି ଲୋକ ପଠେଇଥିଲା ପରା ! ହୋଃ, ହୋଃ, ହୋଃ, ହୋଃ—ହୋଃ । ବାପକୁ ଦେଖେଇ ଦେଇଥିଲା ଚିଠି । ବାପ ଭାଙ୍ଗି ଦେବ ବୋଲି, ବାପକୁ ତ ଆଗରୁ ବନ୍ଧା ବନ୍ଦୀ କରି ରଖିଛି !

ପୁଣି ସ୍ତ୍ରୀ ଲୋକଟି ପ୍ରତି ଦୃଷ୍ଟି ପଡ଼ଗଲା । ବୀରେନ୍ଦ୍ର ତାଙ୍କୁ ଗୋଇଠାଏ ମାରିଦେଇ ରାଗରେ ପାଟିକରି ଉଠିଲେ, "ଚିଠି ଲେଖିବାର ଲଭ ପା । କ'ଣ ଉପକାର ପାଇବୁ ବୋଲି ଏ କାର୍ଯ୍ୟରେ ଗୋଡ଼ ଭର୍ତ୍ତି କରିଥିଲୁ ?..."

ମଦନ ବାବୁ ଏସବୁ ଶୁଣି ଅବାକ୍ । ତାଙ୍କ ଆଖି ଆଗରେ ସବୁ ଘଟନା ନୂଆ ଆଲୋକରେ ଜଳଜଳ ଦିଶିଲା । ବୀରେନ୍ଦ୍ର— କେଡ଼େ ସରଳ, ସାଧୁ ପିଲାଟି ପରି ଜଣାଯାଉଥିଲା ସିଏ ! ତା' ଭିତରେ ପୁଣି ଏତେ କଥା ଅଛି ? ସେ କଣ ତେବେ ତାଙ୍କୁ ଠକେଇ ଦେବାକୁ ଷଡ଼ଯନ୍ତ୍ର କରୁଛି ? ଏ କଣ ବୀରେନ୍ଦ୍ରଟି ? ବୃଦ୍ଧଙ୍କ ଆତ୍ମବିଶ୍ୱାସ ଉପରେ ଘୋର ଆଘାତ ଲଗିଲା । ତାଙ୍କୁ କେହି ଠକେଇ ପାରିବେ ନାହିଁ ବୋଲି ସେ ବୀରେନ୍ଦ୍ର ଆଗରେ କେତେ ଥର ଆଡ଼ମ୍ବର କରି କେତେ କଥା କହିଛନ୍ତି ! ସବୁ ମନେପଡ଼ି ଟିକଏ ଲଜ ମାଡ଼ିଲା । ସଙ୍ଗେ ସଙ୍ଗେ ଭୟଙ୍କର କ୍ରୋଧ ମଧ୍ୟ ହେଲା । ରାଗରେ ଟିକଏ ଇଚ୍ଛା ହେଲା, ବୀରେନ୍ଦ୍ରଙ୍କୁ ପୁଲିସ ହାତରେ ଧରେଇ ଦେବେ । ପୁଣି ସନ୍ଦେହ ହେଲା, ସତେ ଘର ଭିତରେ କ'ଣ ତାଙ୍କ ପ୍ରିୟ ବୀରେନ୍ଦ୍ର ? ସେ କେଉଁ ହୋଇ ନ ଥିବ ପରା । ସେ ଏପରି କହନ୍ତା ?

ବୃଦ୍ଧ କିଛି ସ୍ଥିର କରିବା ପୂର୍ବରୁ ହଠାତ୍ ବାହାରେ ଯୋତା ମଚ୍‌ମଚ୍ ଶବ୍ଦ ଶୁଣାଗଲା । ସଙ୍ଗେ ସଙ୍ଗେ ଇନ୍‌ସ୍ପେକ୍‌ଟର, କନେଷ୍ଟବଲ ହୋଇ ୫।୬ ଜଣ ଘରେ ପଶିଗଲେ ।

ପୁଲିସ ହାକିମମାନଙ୍କର କିଛିଦିନ ହେଲା ବୀରେନ୍ଦ୍ରଙ୍କ କାର୍ଯ୍ୟ କଳାପ ଉପରେ ସନ୍ଦେହ ହୋଇଥିଲା । ସେମାନେ ଗୋପନରେ ଅନୁସନ୍ଧାନ କରୁଥିଲେ ଏବଂ ରାତିରେ ସେ ଗଳିରେ ଯେଉଁମାନେ

ପହରା ଦିଅନ୍ତି, ତାଙ୍କୁ ସତର୍କ ରହିବାପାଇଁ ଆଦେଶ ଦେଇଥିଲେ । ଆଜିର ପହରାବାଲା ସଜ୍ଜନ ସିଂହ ବୀରେନ୍ଦ୍ରଙ୍କ ଘରେ କବାଟ ଖୋଲି ପଶି ଘଟନାସବୁର କିଛି ସଙ୍କେତ ପାଇ ଦଳବଳରେ ଆସିବା ନିମନ୍ତେ ଇନ୍‌ସପେକ୍‌ଟର ବାବୁଙ୍କୁ ଡାକିବାପାଇଁ ଥାନାକୁ ମଣିଷ ପଠାଇ ନିକଟରେ ଲୁଚି ରହିଥିଲା । ମଦନବାବୁ ସେ ଘରେ ପଶିବାର ଅଳ୍ପ ସମୟ ପୂର୍ବରୁ ସେ ଘରୁ ବାହାରି ଯାଇଥିବାରୁ ମଦନ ବାବୁ ତାକୁ ଦେଖିପାରି ନ ଥିଲେ ।

ମଦନ ବାବୁ ପୁଲିସ ଦଳବଳ ଦେଖି ଟିକିଏ କିଂକର୍ତ୍ତବ୍ୟ-ବିମୂଢ଼ ହେଲେ । ବିଚାରିଲେ, ବୀରେନ୍ଦ୍ରକୁ ଖଲାସ କରିବାପାଇଁ ଯତ୍ନ କରିବେ ; କିନ୍ତୁ ବୀରେନ୍ଦ୍ର ମୁହଁରୁ ଯାହା ଶୁଣିଥିଲେ, ସେଥିରେ ତାକୁ ଖଲାସ କରିବା ପାଇଁ ବିଶେଷ ଯେ ପ୍ରବୃତ୍ତି ହେଲା ତାହା ନୁହେଁ ।

ଖଲାସ ବା କରନ୍ତେ କିଣ ? ଆଉ ତ ପ୍ରମାଣ ଲୋଡ଼ା ନାହିଁ । କବାଟ ଭାଙ୍ଗି ପୁଲିସ ବାବୁ ବୀରେନ୍ଦ୍ରଙ୍କୁ ଧରିଲେ । ସ୍ତ୍ରୀ ଲୋକଟିର ଅଚେତନ ଅବସ୍ଥା ଏବଂ ଦେହ ମୁଣ୍ଡରେ ଚିହ୍ନସବୁ ଦେଖି ଦୋଷ ସମ୍ପୂର୍ଣ୍ଣରୂପେ ପ୍ରମାଣିତ ହୋଇଗଲା । ବୀରେନ୍ଦ୍ରଙ୍କ ହାତରେ ଦଉଡ଼ି ହାତକଡ଼ି ପଡ଼ିଲା ।

ମଦନ ବାବୁ ନିଜର ନିର୍ଦ୍ଦୋଷତା ପ୍ରମାଣ କରିବାକୁ ଯାଇ ଯାହା ଜାଣିଥିଲେ ସବୁ ପରିଷ୍କାର ଭାବେ କହିଗଲେ । ଇନ୍‌ସ-ପେକ୍‌ଟରଙ୍କ ସଙ୍ଗେ ତାଙ୍କର ଭାବ ଥିଲା । ଫଳରେ ତାଙ୍କ ବକ୍ତବ୍ୟ ଇନ୍‌ସପେକ୍‌ଟର ବିଶ୍ୱାସ କଲେ । ଦୋଷ ମୁଣ୍ଡରୁ ଖସିଲା । କିନ୍ତୁ ସାକ୍ଷୀ ତ ହେବାକୁ ହିଁ ହେବ ! ଦିନ ୯ଟା ବେଳେ ଥାନାକୁ ଯିବାକୁ ପ୍ରତିଶ୍ରୁତ ହୋଇ ମଦନ ବାବୁ ଆପଣା ଘରକୁ ଫେରିଲେ ।

ପୁଲିସ ବାଲା ବୀରେନ୍ଦ୍ର ଏବଂ ସ୍ତ୍ରୀ ଲୋକଟିକୁ ସଙ୍ଗରେ ଧରି ଥାନାକୁ ଗଲେ ।

## ତେଇଶ

ଏ ଆକସ୍ମିକ ଦୁର୍ଦ୍ଦଶାରୁ ଅନ୍ତତଃ କେତେ ଘଣ୍ଟା ଫୁରୁସତ୍ ପାଇ ମଦନବାବୁ ଘରକୁ ଫେରିଲେ । ବୀରେନ୍ଦ୍ରଙ୍କ ଘରର ଘଟଣା ସହିତ କନକର ନିରୁଦ୍ଦେଶ୍ୟ ହେବାର କିଛି ସମ୍ବନ୍ଧ ଅଛି କି ନାହିଁ ଚିନ୍ତା କରି ମଦନ ବାବୁ ନିଜର ଅବଶ ଶରୀର ନେଇ ପୁଣି ଶଯ୍ୟାରେ ପକାଇଲା ବେଳକୁ ରାତି ପ୍ରାୟ ୩ଟା, ୪ଟା । ଏତେବେଳେ ଆଉ କୁଆଡ଼େ ଯିବେ, କଣ ଖୋଜିବେ ? ଏ ଚିନ୍ତାକୁ ନିଦ୍ରା ଆସି ଲୋପ କରିନପାରି ଜାଗରଣ ଅବସ୍ଥାରୁ ସ୍ୱପ୍ନରାଜ୍ୟରେ ନେଇ ପକାଇ ଦେଲା । ମଦନ ବାବୁ ସ୍ୱପ୍ନ ଦେଖିଲେ – ତାଙ୍କ ଝିଅ କନକ ଓ ବୀରେନ୍ଦ୍ରଙ୍କର ବିବାହ ହେଉଛି—ଅଗଣା ଭିତରେ ବେଦୀଘର । ଆଚାର୍ଯ୍ୟ ନିଜର ଦୁଇ-ପାଖରେ ମୁହାଁ ମୁହିଁ କରି ବୀରେନ୍ଦ୍ର ଓ କନକଙ୍କୁ ବସାଇ ଛାପା କାଗଜର ଅକ୍ଷରେ ଅକ୍ଷରେ ପ୍ରତିଜ୍ଞା କରାଉଛନ୍ତି । ବୀରେନ୍ଦ୍ର ତାଙ୍କର ପ୍ରତିଜ୍ଞା କରି ସାରିଲେଣି । ଆଉ ବାକି କନକ । ଆଚାର୍ଯ୍ୟ କହୁଛନ୍ତି "ମା କହ, ମୁଁ ଶ୍ରୀମତୀ କନକଲତା ଦେବୀ, ତୁମ୍ଭଙ୍କୁ ଶ୍ରୀ ବୀରେନ୍ଦ୍ର—" ହଠାତ ବେଦୀରୁ କନକ କୁଆଡ଼େ ଚାଲିଗଲେ । "କୁଆଡ଼େ ଗଲୁ ମା" ବୋଲି କହି ମଦନ ବାବୁ ବ୍ୟସ୍ତ ସମସ୍ତ ହୋଇ ଖଟରୁ ଉଠି ପଡ଼ିଲେ । ମାଧିଆ ଖଟ ପାଖରେ ଠିଆ ହୋଇ କହୁଛି, "ଅଧୀର ହେଉଛ କାହିଁକି, ବାବୁ ! ଦେଇ କୁଆଡ଼େ ଯାଇଛନ୍ତି, ଏଇଲଗେ ଫେରି ଆସିବେ । ଇମିତି ହେଲେ କଣ ହେବ ?"

ମଦନବାବୁ ସ୍ବକରର ଉକ୍ତିରେ କୌଣସି ଉତ୍ତର ନ ଦେଇ ଘଣ୍ଟାକୁ ଗୁହିଁଦେଲେ, ବେଳ ସାଢ଼େ ନଅଟା ହେଲାଣି । ଥାନାକୁ ଯେ ଯିବାର କଥା । ମାଧିଆ ଧାଇଁ ଯାଇ ଗାଡ଼ି ସଜାଇ କରିବା ବନ୍ଦୋବସ୍ତ କରିଦେଲା । ବାବୁ କପେ ଚା' ପିଇଦେଇ ଉତ୍ତରବରରେ ଖଣ୍ଡେ କାମିଜ୍ ଗଳେଇ ପକେଇ ଗାଡ଼ିରେ ବସିଲେ ଏବଂ 'ଥାନାକୁ ଚଳ' ବୋଲି ହୁକୁମ ଦେଇ ଗତରାତ୍ରିର ଘଟଣା ଓ ତା' ସଙ୍ଗେ ଗତରାତ୍ରିର ସ୍ବପ୍ନକଥା ଚିନ୍ତା କରୁ କରୁ ଥାନା ଆଡ଼କୁ ଅଗ୍ରସର ହେଲେ ।

ଥାନାକୁ ଗଲାବେଳକୁ ସୀରେନ୍ଦ୍ର ବାବୁଙ୍କ ପକ୍ଷରୁ ଜଣେ ଓକିଲ ଜାମିନ୍ ନେବାର ଯୋଗାଡ଼ କରିବା ନିମନ୍ତେ ସୀରେନ୍ଦ୍ରଙ୍କୁ ଆଶ୍ବାସନା ଦେଉଛନ୍ତି । ସୀରେନ୍ଦ୍ରଙ୍କର ବକ୍ତବ୍ୟ ପୁଲିସ ଟିପି ନେଇଛି । ସେ କହିଛନ୍ତି—"ଏ ମାଇକିନିଆ କିଏ ମୁଁ ଜାଣେ ନାହିଁ । ହଠାତ୍ ଆମ ଘର ଭିତରେ ପଶି ଗୋଟାଏ ଜିନିଷ ଧରି ପଳାଇ ଯାଉଥିବା ବେଳେ ମୁଁ ଦେଖିପାରି ତାକୁ ଜବତ୍ କରି ରଖିଥିଲି ।"

ସ୍ତ୍ରୀଲୋକଟିକୁ ପଚାରିବାରେ ସେ କିଛି କହୁନାହିଁ ।

ମଦନବାବୁ ଯାଇ ପହଞ୍ଚିବାରେ ଇନ୍‌ସପେକ୍ଟର ବାବୁ ପଚାରିଲେ, "ଆପଣ ଏ ବିଷୟରେ କଣ ଜାଣନ୍ତି କହନ୍ତୁ ।" ମଦନବାବୁ ଅନ୍ୟ ସମୟ ହୋଇଥିଲେ ଅବା କଥାକୁ ବାଟେଇଥାନ୍ତେ, କିନ୍ତୁ ବର୍ତ୍ତମାନର ମାନସିକ ଅବସ୍ଥାରେ ସେ ଗତ ରାତ୍ରିରେ କହିଥିବା କଥା ପୁଣି ଆଉ ଥରେ ଠିକ୍ ସତ ସତ କହିଗଲେ । "ମୋର ବିଶେଷ କାରଣ ଥିବାରୁ ସୀରେନ୍ଦ୍ରଙ୍କ ଘରକୁ ଯାଇ ଦେଖିଛି ଏ ଘଟଣା", ବୋଲି କଥା ଆରମ୍ଭକରି ଘରଭିତରୁ ସେ ଯାହା ଶୁଣିଥିଲେ ସବୁ ସଠିକ ବର୍ଣ୍ଣନା କରିଗଲେ ।

ଇନ୍‌ସପେକ୍‌ଟର—ଏ ଯେଉଁ ଚିଠିକଥା ଉଠୁଛି ସେ ବିଷୟ ତ ଆପଣ ଜାଣିଥିବେ ?

ମଦନବାବୁ—ହଁ, ମୁଁ ଜାଣେ ।

ଇନ୍‌ସପେକ୍‌ଟର—ସେ ଚିଠି ଆପଣଙ୍କ ପାଖରେ ଅଛି ?

ମଦନବାବୁ—ନା, ସେଖଣ୍ଡ କୁଆଡ଼େ ହଜିଲାଣି । ତେବେ ମୁଁ ଚିଠିର ବିଷୟ କହିପାରିବ ।

ଚିଠିର ବିଷୟ ଶୁଣିସାରି ଇନ୍‌ସପେକ୍‌ଟର ବାବୁ କହିଲେ, "ବୀରେନ୍ଦ୍ର ବାବୁ, ଆପଣ ଏ ସ୍ତ୍ରୀଲୋକ ବିଷୟରେ ଯେଉଁ ଘୃଣିତ ଅପବାଦ ଦେଉଛନ୍ତି ତାହା ସତ୍ୟପରି ଜଣା ଯାଉନାହିଁ । ମୁଁ ଆପଣଙ୍କ ଉପରେ ଅନେକ ଦିନୁ ନଜର ରଖିଥିଲି ଏବଂ ଆପଣଙ୍କ ଚରିତ୍ର ବିଷୟରେ ଏ ସ୍ତ୍ରୀଲୋକ କିଛି ନ କହିଥିଲେ ସୁଦ୍ଧା ମୋର ଆଉ ଅନେକ ସାକ୍ଷୀ ବାହାରିବେ । ଆପଣ ଏ ସ୍ତ୍ରୀଲୋକ ଉପରେ ଯେଉଁ ଅପବାଦ ଦେଉଛନ୍ତି, ତାହା ନିତାନ୍ତ ଅସମ୍ଭବ । ଏ ଅପବାଦ ବର୍ତ୍ତମାନ ପ୍ରତ୍ୟାହାର କଲେ ମୁଁ ତାକୁ ହାଜତରୁ ବାହାର କରିଦେବି ।"

ବୀରେନ୍ଦ୍ର—ମୁଁ ସତ୍ୟର ପ୍ରତ୍ୟାହାର କରି ଜାଣେ ନାହିଁ ।

ଇନ୍‌ସପେକ୍‌ଟର—ଓଃ, ସତେ ନା ! ହଉ, ବାଧ୍ୟ ହୋଇ ସେ ଆଉ କେତେ ଘଣ୍ଟା ହାଜତ୍‌ରେ ରହିବ ।

ତା' ପରେ ମଦନବାବୁଙ୍କୁ ଇନ୍‌ସପେକ୍‌ଟର କହିଲେ, "ଆପଣ ଏଥର ଯା'ନ୍ତୁ । ତାରିଖ ଆପଣଙ୍କୁ ଜଣାଇ ଦିଆଯିବ । ଆପଣ ତ ଏ ମକଦ୍ଦମାରେ ସବୁଠାରୁ ବଡ଼ ସାକ୍ଷୀ ।"

ମଦନବାବୁ ବଳ୍ ବଳ୍ ହୋଇ ସୀରେନ୍ଦ୍ର ଆଡ଼କୁ ଟିକଏ ଚାହିଁଲେ, ଶୁଣିଲେ ଓକିଲ ତାଙ୍କୁ କହୁଛି, "ତୁମକୁ ଜାମିନ୍ ମିଳିବ କି ନାହିଁ ସନ୍ଦେହ । ତା'ପରେ ଯେ ତୁମର ଜାମିନ୍‌ଦାର ହୋଇଥାନ୍ତେ ସେ ଯେ ପୁଲିସ୍ ତରଫ ସାକ୍ଷୀ ।" ସୀରେନ୍ଦ୍ର ମଦନବାବୁଙ୍କ ଆଡ଼କୁ ଚାହିଁଲେ । ବାବୁ ବୁଝିଲେ, ଏ ଚାହାଁଣି ଭିତରେ କେତେ ଘୃଣା ଓ କ୍ରୋଧ ପୂରି ରହିଛି । ସେ ସୀରେନ୍ଦ୍ରର ଦୃଷ୍ଟି ଏଡ଼ି ଘରକୁ ଫେରିଲେ ।

ଘରକୁ ଫେରିବା ସାଙ୍ଗେ ମଦନବାବୁଙ୍କ ମନକୁ କନକର ଚିନ୍ତା ଆସି ଅଧିକାର କଲା । କନକ ନ ଥିବାରୁ ଘରଟା ବଡ଼ ଶୂନ୍ୟ ଜଣା ଯାଉଥାଏ । କୁଆଡ଼େ ଗଲା କନକ ? ମଦନବାବୁ ଖୁବ୍ ଭାବ ହେଲେ । ତାଙ୍କ ଭାବଭଙ୍ଗୀରୁ ଜଣା ଯାଉଥାଏ, ସେତିକି ବେଳେ କନକ ଆସି ତାଙ୍କ ଆଗେ ପହଞ୍ଚିଥିଲେ ସେ ଝିଅକୁ ସ୍ନେହରେ ଯେ କୌଣସି ବର ଦେଇଥାନ୍ତେ ।

ହଠାତ୍ ଆଖି ଆଗରେ ପଡ଼ିଗଲା କନକ ହାତର ସେ ଚିଠିଖଣ୍ଡ । ବୃଦ୍ଧ ବଡ଼ ବ୍ୟାକୁଳ ହୋଇ, ଆବେଗରେ ହୃଦସ୍ପନ୍ଦନ ଭରି ବେଗେ ଯାଇ ସେ ଚିଠିଖଣ୍ଡ ଗୋଟେଇ ପକେଇ ପଢ଼ିବାକୁ ଆରମ୍ଭ କଲେ ।

ଚିଠି ପଢ଼ୁ ପଢ଼ୁ ମଦନବାବୁଙ୍କ ତତ୍କାଳୀନ ମନୋ-ଭାବର ପୁଣି ଭୟଙ୍କର ପରିବର୍ତ୍ତନ ହେଲା । ଯେ ଟିକିକ ପୂର୍ବରୁ ଏତେ ଉଦ୍‌ବିଗ୍ନ ହୋଇ ଚିଠି ଗୋଟେଇବାକୁ ଧାଇଁ ଆସିଥିଲେ, ତାଙ୍କର ସେ ଉଦ୍‌ବିଗ୍ନ ଭାବ କୁଆଡ଼େ ଗଲା । ପୁଣି ମୁହଁକୁ କଠୋର ରୂଢ଼ ଭାବ ଫେରି ଆସିଲା । ସେ ଓଠରେ ଦାନ୍ତ ଚିପି ପ୍ରତିଜ୍ଞା କଲେ, "ହଁ, ପିଲା ଟିକଏ ତୋ'ର ଏତେ ଜଗର ! ଆଜ୍ଛା ମୋ' ଜଗର ଦେଖିବୁ !"

× × × ×

ପ୍ରାୟ ଘଣ୍ଟାକ ପରେ ମଦନବାବୁଙ୍କର ଜଣେ ବନ୍ଧୁ ଆସି ମଦନବାବୁଙ୍କୁ ଘରେ ବଡ଼ ଗମ୍ଭୀର ଭାବରେ ବସିଥିବାର ଦେଖି ପଚାରିଲେ, "କି ହେ, ମଦନବାବୁ, ତୁମେ ଏଠାରେ ଏପରି ବସିଛ ? ମୁଁ ଶୁଣୁଛି, ତୁମ ଝିଅର ଆଜି ବିବାହ । କାଠଗଡ଼ା ସାହି ମହାଜନ କୋଠାରେ ହେଉଛି । କେତେ ଓକିଲ ମୁକ୍ତ୍ୟାର ନିମନ୍ତ୍ରଣ ପାଇ ଯାଇଛନ୍ତି, ଶୁଣିଲି । ତୁମେ ଯେ ଏଠାରେ ? କଥା କଣ ?"

ମଦନବାବୁ ଘଡ଼ିଏ ଖଣ୍ଡେ ଅନ୍ୟମନସ୍କ ଥିଲା ଭଳିଆ ଉପରକୁ ଚାହିଁ ରହିଲେ ; ତା'ପରେ ବଡ଼ କଠୋର ଭାବରେ ବନ୍ଧୁଙ୍କ ମୁହଁକୁ ପର୍ଯ୍ୟବେକ୍ଷଣ କଲେ ; ଶେଷରେ ଖୁବ୍ ରାଗରେ ଚୀତ୍କାର କରି ଉଠିଲେ—ମୋ' ଝିଅର ବିବାହ ! ମୋ'ର ଝିଅ ପିଅ କେହି ନାହିଁ, ଯାଅ ।

## ତବାଶ

ଜଗୁଆ ମା ଗୋପାଳଙ୍କ ପାଖରୁ ଜଙ୍ଗଲରୁ ଆସି ବାସୁ ମହାଜନଙ୍କ ସଙ୍ଗେ କି କଥାବାର୍ତ୍ତା ହେଲା, ବାସୁ ମହାଜନ ତାଙ୍କ ବିଶ୍ୱାସୀ ଗାଁ ମାମଲତକାର ସାଧୁ ଦାସଙ୍କ ସଙ୍ଗେ କି କଥାବାର୍ତ୍ତା ହେଲେ, ତା' ପରେ ବାସୁଦେବ ମଧୁ ମହାନ୍ତି, ସାଧୁ ଦାସ ପ୍ରଭୃତିଙ୍କୁ ସାଙ୍ଗରେ ଧରି କଟକ ଆସି ତାଙ୍କ ଓକିଲଙ୍କ ସଙ୍ଗେ କ'ଣ ପରାମର୍ଶ କଲେ ସେ ବିଷୟରେ ଆମର ବିଶେଷ କିଛି କହିବାର ନାହିଁ ; ପାଠକମାନେ ଅନୁମାନ କରି ନେବେ । ତେବେ ଏତିକି ମାତ୍ର କୁହାଯାଉ ଯେ, ମଦନବାବୁଙ୍କ ବନ୍ଧୁ ତାଙ୍କୁ ଯେଉଁ ସମ୍ବାଦ ଆସି ଶୁଣାଇଲେ ବୋଲି ପୂର୍ବ ପରିଚ୍ଛେଦରେ ଲେଖାଯାଇଛି ତାହା ସତ୍ୟ । ବାସୁମହାଜନଙ୍କ ଖର୍ଚ୍ଚରେ, ତାଙ୍କ କଟକ ଓକିଲଙ୍କ

ପରାମର୍ଶରେ, ମଧୁ ମହାନ୍ତି, ଜଗୁଆ, ଏପରି କି ନଧିଆର ସତ୍ସ୍ନେହ ସାହାଯ୍ୟରେ, ବାସୁଦେବଙ୍କ ଗ୍ରାମର ଜଣେ ନୈଷ୍ଠିକ ବ୍ରାହ୍ମଣଙ୍କ-ଦ୍ୱାରା ହିନ୍ଦୁ ମତରେ ଗୋପାଳ ଓ କନକଲତାଙ୍କର ହାତଗଣ୍ଠି ପଡ଼ିଲା ଏବଂ ସେହି ବାସୁଦେବଙ୍କର ସାହାଯ୍ୟ ଓ ସହାନୁଭୂତି ପାଇ ଗୋପାଳ କନକଲତାଙ୍କୁ ଧରି ତାଙ୍କ ସେହି ଜଙ୍ଗଲଘରକୁ ଫେରି-ଗଲେ ।

ବାସୁଦେବ ଏ ଜଙ୍ଗଲ ଜୀବନର ଘୋର ପ୍ରତିବାଦ କରିଥିଲେ, ଗୋପାଳଙ୍କୁ କାଠଗଡ଼ାସାହିର ତାଙ୍କ ନିଜ କୋଠା ଛାଡ଼ି ଦେବାକୁ ଆନନ୍ଦରେ ଅଙ୍ଗୀକାର କରିଥିଲେ ଏବଂ ଗୋପାଳଙ୍କୁ ତାଙ୍କ ନିଜ ପୁଅଭଳିଆ ନିଜ ଅଜସ୍ର ଅର୍ଥର ଯଥେଷ୍ଟ ବ୍ୟବହାର କରିବା ନିମନ୍ତେ ଆଦରରେ ଯାଚି ଥିଲେ । କିନ୍ତୁ ଗୋପାଳ ଏ ସବୁ କଥାରେ କୃତଜ୍ଞତାର ସହିତ ଅନିଚ୍ଛା ଜଣାଇଲେ । ବୋଧହୁଏ ତାଙ୍କର ମନେ ମନେ ଇଚ୍ଛା ହୋଇଥିଲା, କନକ ନ ଥିବା ବେଳେ ଜଙ୍ଗଲବାସ ଯେପରି ଲାଗୁଥିଲା ତା' ସଙ୍ଗେ କନକ ସଙ୍ଗରେ ଥିବା ଅନୁଭୂତିର ତୁଳନା କରିବେ । ଯାହାହେଉ, ଗୋପାଳ ଗଲେ, କନକଲତା ଗଲେ ଏବଂ ସଙ୍ଗରେ ଗଲା ଜଗୁଆ ମା ।

+ + +

ବିବାହ ହେବାର ୫ ବର୍ଷ ହୋଇଗଲାଣି । କନକଙ୍କ କୋଳରେ ବର୍ତ୍ତମାନ ଗୋଟିଏ ଶିଶୁ ପୁତ୍ର । ଶିଶୁଟିର ଚପଳ ଆନନ୍ଦରେ କନକ ବହୁ ପରିମାଣରେ ଅତୀତର ସ୍ମୃତି ଏବଂ ପିତାଙ୍କୁ ପାସୋରି ପକେଇଛନ୍ତି । ନା ଠିକ ପାସୋରି ପାରୁନାହାନ୍ତି—କେବଳ ସେ ସ୍ମୃତିର ଚିନ୍ତାକୁ ଶିଶୁଟି ଚାପା ଦେଇ ଦେଉଛି ।

କନକଙ୍କର ଆନନ୍ଦ ଦେଖି ଗୋପାଳଙ୍କ ମନରେ ଆନନ୍ଦ, କିନ୍ତୁ ନିରାନନ୍ଦ ଏକୁଟିଆ ଜଗୁଆ ମା । ସେ ଗୋଟାଏ କ'ଣ ବିଷୟ ନେଇ ସବୁବେଳେ ଚିନ୍ତିତ । ସତେ ଯେପରି ଏ ସବୁ ଭିତରେ ଗୋଟାଏ କିଛି ଅଭାବ ରହିଗଲା ବୋଲି ସେ ମନେକରୁଛି । କିନ୍ତୁ ସେ ଅଭାବ କଣ ସେ କାହାକୁ କିଛି କହୁ ନାହିଁ ।

ହଠାତ୍ ଦିନେ ତା' ମନରେ ଗୋଟାଏ କିଛି ନୂଆ ଆଶାର ଉଦୟ ହେଲା । ତା'ର ମୁହଁରୁ ସମସ୍ତ ବିଷାଦଭାବ ଦୂର ହୋଇଗଲା । ଆଶାରେ ତା ମୁହଁର ବାର୍ଦ୍ଧକ୍ୟ ଭିତରେ ଆଲୋକର ରେଖା ଅଙ୍କି ହୋଇଗଲା । ଜଗୁଆ ମା ଜିଦ୍ ଧଇଲା, ସମସ୍ତେ ଯିବେ କଟକ । ଗୋପାଳ କାରଣ ପଚାରିଲେ, କନକ କାରଣ ପଚାରିଲେ । କିନ୍ତୁ ସେ କାରଣ କହୁ ନ ଥାଏ । ଖାଲି ଗୋଟାଏ କଥା—ଚାଲ ଯିବା କଟକ ।

ବାଧ୍ୟ ହୋଇ ସମସ୍ତେ ଗଲେ ମହାଜନଙ୍କର ସେହି କାଠଗଡ଼ାସାହି କୋଠାକୁ । ଜଗୁଆ ମା ବସାରେ ଓହ୍ଲାଇ ଓହ୍ଲାଇ ମଦନ ବାବୁଙ୍କ ଘରକୁ ଧାଇଁଲା । ମଦନ ବାବୁଙ୍କ ଅଫିସ ଛୁଟି ଲାଗି ପଡ଼ିଯିବ, ଏହି ଭୟରେ ଲୁଚି ଲୁଚି ପେଟରଣୀପରି ତାଙ୍କ ଘରେ ପଶିଲା – ମାଧିଆ ଚାକରଠାରୁ ମଦନ ବାବୁଙ୍କ ବର୍ତ୍ତମାନ ଚାଲି ଚଳନ ସମ୍ବନ୍ଧୀ ବିଷୟରେ ଅନେକ ପଚାରିଲା । ଯାହା ଶୁଣିଲା ସେଥିରେ ତା ମୁହଁର ଆଲୋକ ଆହୁରି ତେଜ ହୋଇଗଲା ।

କଟକ ଆସିବାର ସପ୍ତାହେ ହୋଇଗଲାଣି । ଜଗୁଆ ମା ଗୋପାଳଙ୍କ ଶିଶୁପୁଅଟିକୁ ଧରି ଚାକରମହଲରେ ଅନେକ ସମୟ କଟାଏ । ପିଲାଟି ସେ ଘରକୁ ଆଉ ଅଲୋଡ଼ା ପାଉନାହିଁ । ଦିନେ ମଦନବାବୁ ତାଙ୍କ ଆରାମ ଚୌକିରେ ଶୋଇ ପଡ଼ିଛନ୍ତି । ବେଳ ଆଉ

ଦଣ୍ଡେ ଖଣ୍ଡେ ଅଛୁ । ମାଧିଆ ଧୀରେ ଧୀରେ ପିଲଟିକୁ ନେଇ ତାଙ୍କ ବୈଠକଖାନାରେ ଗ୍ରୁଡ଼ଦେଇ ଆସିଲା । ପିଲଟି ବୈଠକଖାନାରେ ନାନା ରକମ ସୁନ୍ଦର ସୁନ୍ଦର ଜିନିଷକୁ ଚାହୁଁଥାଏ । ସେ ଭାରି ଆଶ୍ଚର୍ଯ୍ୟ, ଭାରି ଖୁସି ହେଉଥାଏ । ତା ଆଖି ବୁଲିଆଡ଼େ ଘେରଫେର ଶେଷରେ ନିଦ୍ରିତ ମଦନ ବାବୁଙ୍କ ଉପରେ ପଡ଼ିଲା । ପିଲାଦିନୁ ତା'ର ଶିକ୍ଷା—ସେ କାହାକୁ ଡରେନାହିଁ--ଭାଲୁ ତ ତା'ର ସଙ୍ଗୀ, ଭୟ କରିବ ସେ କାହାକୁ ? ସେ କୌତୂହଳରେ ବୁଢ଼ାଙ୍କ ଚୌକି ଆଡ଼କୁ ଦାଣ୍ଡେଇଲା ।

ମଦନ ବାବୁଙ୍କର ନିଦ ଭାଜିଗଲା । ସେ ଏ ଶିଶୁକୁ ଦେଖିଲେ । ତାଙ୍କ ବୈଠକଖାନାରେ ଶିଶୁ ! କନକଙ୍କ ପିଲାଦିନୁ ତ ଏ ବୈଠକ ଖାନାରେ ପିଲା ଖେଳିବାର ଦେଖା ନାହିଁ ! କନକ ମନେ ପଡ଼ିଗଲେ । ବୃଦ୍ଧ ଦୀର୍ଘ ନିଶ୍ୱାସ ପକାଇ ଶିଶୁକୁ ଚାହିଁଲେ । ସେ କିଏ ? ହଠାତ୍ କନକଙ୍କ ସାଦୃଶ୍ୟ ତା ମୁହଁରେ ଦିଶିଲା ! ମଦନ ବାବୁ ଆଶ୍ଚର୍ଯ୍ୟ ହେଲେ । କନକ ଭଳିଆ ତ ଏ ଦିଶୁଛି—କିନ୍ତୁ ପରମୁହୂର୍ତ୍ତରେ ନିଜର ବାତୁଳତାରେ ହସିଲେ । କନକ କୁଆଡ଼େ ? ସେ ବଞ୍ଚିରୁଛନ୍ତି କଣ ?

ମଦନ ବାବୁଙ୍କ ମନରେ ଏ ସବୁ ଚିନ୍ତା ଚାଲୁଥାଏ । ଶିଶୁଟି ତାଙ୍କର ଆଡ଼କୁ ଚାହିଁ ରହିଥାଏ, ଯେପରି କି ତା'ର ଇଚ୍ଛା, ମଦନ ବାବୁଙ୍କଠାରୁ ଟିକିଏ ପ୍ରଶ୍ରୟ ପାଇଲେ, ତାଙ୍କ ଉପରେ ଯାଇ ବସନ୍ତା । ମଦନ ବାବୁ ଚଉକିରୁ ଉଠି ତାକୁ କୋଳ କଲେ—ତା'କୁ ଧରି ବୈଠକଖାନାରେ ଟିକିଏ ବୁଲାଇଲେ । ପିଲଟି ବୈଠକଖାନାର କେତେ ଖେଳନାକୁ ହାତ ବଢ଼ାଉଥାଏ । ମଦନ ବାବୁ କୁ'ଠୁ କମିତି ଗୋଟିଏ ଲେଖାଏ ଆଣି ତା' ହାତରେ ଦେଉଥାନ୍ତି । ଜଗୁଆ ମା

କବାଟ ଆଡ଼୍‌ଆଳରୁ ଏସବୁ ଦେଖି ଅନନ୍ଦରେ କାନ୍ଦ ପକାଉଥାଏ । ମାଧିଆ ମଦନ ବାବୁଙ୍କର ଏ ଅପୂର୍ବ ଶିଶୁପ୍ରେମ ଦେଖି ଚକିତ ହେଉଥାଏ ।

+ + + +

ଘଡ଼ିଏ ଖଣ୍ଡେ ଗଲା, ପିଲା ମନ ତ ! ସେ କାନ୍ଦି ଉଠିଲା— "ବୋଉ ଯିବି" । ମଦନ ବାବୁ ସ୍ୱର୍ଗରୁ ଖସି ପଡ଼ିଲେ । "କାହାର ପିଲା, କାହା ପାଖକୁ ଯିବ—ହଠାତ୍ ମୋ' ଠାରେ ଆସି କାହିଁକି ମାୟା ଲଗେଇ ଦେଲା ?" ବସ୍ତୁତଃ ସେ ଗୋଟିଏ ଦୀର୍ଘ ନିଶ୍ୱାସ ଛାଡ଼ି ମାଧିଆକୁ ଡାକି କହିଲେ—ଆରେ ଏ ପିଲାଟି କିଏ ? କାହାଘରୁ ଆସିଛି ? ବଧୂ ପୁଅ ? (ବଧୂ ବାବୁ ତାଙ୍କର ଜଣେ ପଡ଼ୋଶୀ । ମାଧିଆ ନ ଶୁଣିଲା ପରି ତୁନି ହୋଇ ରହିଲା । ମଦନ ବାବୁ ବୁଝିଲେ, ବୋଧହୁଏ ଅନୁମାନ ସତ୍ୟ । ମାଧିଆକୁ କହିଲେ — "ନେ ଯାଆକୁ ତା'ଘରେ ଛାଡ଼ି ଦେଇ ଆ ।" ଏହା କହି ତା'କୁ ମାଧିଆ କାଖକୁ ବଢ଼େଇ ଦେଲା ବେଳକୁ ପିଲା କାନ୍ଦି ଉଠିଲା—ଅର୍ଥ, ମଦନ ବାବୁ ନିଜେ ନେଇ, ବୋଉ ପାଖରେ ପହଞ୍ଚାଇ ଦେବେ । ବୃଦ୍ଧ ବାଧ ହୋଇ ତାକୁ ଧରି ତା' ଘରକୁ ନେବାକୁ ପ୍ରସ୍ତୁତ ହେବାରେ ଲାଗିଲେ ।

ଇତି ମଧ୍ୟରେ ଜଗୁଆ ମା ଯାଇ କନକକୁ ସବୁ ସମ୍ବାଦ ଚୁପ୍‌କରେ ଦେଇ ଡାକି ଆଣିଥାଏ । ମଦନ ବାବୁ ଗୋପାଳଙ୍କ ଶିଶୁପୁତ୍ରଟି ଧରି ବୈଠକଖାନାରୁ ବାହାରୁଛନ୍ତି, ଲମ୍ବ ଓଢ଼ଣା ପକେଇ ତାଙ୍କ ଘରେ ଜଣେ ଯୁବତୀ ପଶିଲେ । ମଦନ ବାବୁ ମୁହଁ ନ ଦେଖି ଚିହ୍ନି ପାରିଲେ ନାହିଁ । କିନ୍ତୁ ଶିଶୁ ତା' ସ୍ୱାଭାବିକ ଶକ୍ତି ବଳରେ ଚିହ୍ନିଲା ଏବଂ ଚିହ୍ନି 'ବୋଉ' 'ବୋଉ' ବୋଲି ହାତ

ବଢ଼ାଇଦେଲା । ମଦନ ବାବୁ ସ୍ତମ୍ଭୀଭୂତ ହେଲେ । ପର ମୁହୂର୍ତ୍ତରେ 'ବୋଉ' 'ବାପା' ବୋଲି କାନ୍ଦି ଉଠି ବୃଦ୍ଧଙ୍କ ପାଦରେ ଲେଟିଲେ—

+ + +

ଜଗୁଆ ମା'ର ଦୁଃଖ ଦୂର ହେଲା । ମଦନ ବାବୁ ଗୋପାଳ ଓ କନକ ଉଭୟଙ୍କୁ କ୍ଷମା ଦେଲେ । କିନ୍ତୁ ଜ୍ୱାଲିଁ ବା ଝିଅ ସଙ୍ଗେ ତାଙ୍କର ବେଶୀଦିନ କଟେ ନାହିଁ । ମଦନ ବାବୁଙ୍କ ଶେଷ ସମୟ ଅଜା ନାତି ରହସ୍ୟରେ କଟିଲା ।

ଆଉ ଅନ୍ୟାନ୍ୟଙ୍କ ବିଷୟରେ ପଦେ ଅଧେ କହିଲେ ଆମର କାର୍ଯ୍ୟ ଶେଷ । ଯେ ଖୁବ୍ ପାପୀ, ଯେ ଖୁବ୍ ଦୁରନ୍ତ, ତା'ର ଗତି ଟିକିଏ ଫେରିଲେ, ଖୁବ୍ ବଡ଼ ପରିବର୍ତ୍ତନ ହୁଏ । ସେ ଖୁବ୍ ଧାର୍ମିକ, ଖୁବ୍ ସାଧୁ ହୁଏ । ଅନ୍ତତଃ ବାସୁଦେବଙ୍କଠାରେ ଏକଥା ଦେଖାଯାଇଛି । ସେ ନିଧିଆକୁ ପୁଅ କରିବାକୁ ଯେତେବେଳେ ବଡ଼ ଇଚ୍ଛା କରୁଥିଲେ । ଗୋପାଳଙ୍କ ବିଷୟରେ ସେ ଯାହା କରିଥିଲେ ତା'ର ପ୍ରତିଦାନରେ ଜଗୁଆ ମା ନିଧିଆକୁ ତାଙ୍କୁ ଦେଇଛି । କିନ୍ତୁ ବାସୁଦେବଙ୍କର ବର୍ତ୍ତମାନ ପୁଅର ଅଭାବ ନାହିଁ । ଗାଁଯାକର ସେ ବର୍ତ୍ତମାନ ବାପା ହୋଇଛନ୍ତି । ତାଙ୍କ ଗାଁର, ପାଖ ଆଖ ଗାଁର ଦୁଃଖୀରଙ୍କୀ ସମସ୍ତେ ବର୍ତ୍ତମାନ ତାଙ୍କର ଆଶ୍ରିତ ।

ସୀରେନ୍ଦ୍ରଙ୍କ ନାମରେ ମକଦ୍ଦମା ଅନେକ ଦିନ ଧରି ଚାଲିଲା । ସୀରେନ୍ଦ୍ରଙ୍କ ପକ୍ଷରୁ ଓକିଲ ଜୋର ଦିଆ ହୋଇ ପାରିଲା ନାହିଁ । ଦିଆ ହୋଇଥିଲେ ବି ଫଳ କିଛି ହୋଇନଥାନ୍ତା । ପୁଲିସ ପକ୍ଷରୁ

ଏପରି ଝାଣ ପ୍ରମାଣ ଦିଆ ହେଲା ଏବଂ ଇନସ୍ପେକ୍ଟର ସହେବ ଏତେ ଦିନରୁ ସାକ୍ଷୀ ଯୋଗାଡ଼ କରି ରଖିଥିଲେ ଯେ, ଅନାୟାସରେ ବୀରେନ୍ଦ୍ରଙ୍କୁ ୩ବର୍ଷ ମିଆଦ ହୋଇଗଲା ।

କୁମୁଦିନୀ ଭାଇର ଦୋଷ ପାଇଁ ନିଜ ସ୍ୱ ସମାଜ ହାତରୁ ବଡ଼ ତାଡ଼ନା ପାଉଛନ୍ତି । ତାଙ୍କ ବନ୍ଧୁମାନେ କେହି ଆଉ ତାଙ୍କ ପାଖ ପଶୁ ନାହାନ୍ତି । କୁମୁଦିନୀ ସମସ୍ତଙ୍କର ତାଡ଼ନା ଓ ଘୃଣାର ତାଲିକା ହୃଦୟରେ ଠିକ କରି ରଖୁଛନ୍ତି—ଭାଇ ଫେରିଲେ ଦୁହେଁ ମିଶି ପ୍ରତିହିଂସା ନେବେ ।

ବୀରେନ୍ଦ୍ରଙ୍କର ସେହି 'ଆଶ୍ରିତା' (?) ସ୍ତ୍ରୀ—ଲୋକଟି ବର୍ତ୍ତମାନ କନକଙ୍କର ସଙ୍ଗିନୀ ହୋଇଛି । କନକ ତାକୁ ନିଜର ସହାନୁଭୂତିରେ ସୁଖୀ କରିଛନ୍ତି ।

